

ଚିତ୍ର
ସୌଜନ୍ୟ :
ଜବାହରଲାଲ
ନେହେରୁ ମେମୋରିଆଲ୍
ଫଣ୍ଡ୍

ISBN 81-237-2137-4

1997 (ଶକାବ୍ଦ 1919)





Jawaharlal Nehru *(Oriya)*
ଟ. 15.00
ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ,
ନୂଆଦିଲ୍ଲୀ-110 016 କର୍ତ୍ତୃକ ପ୍ରକାଶିତ ।

ନେହେରୁ ବାଳ ପୁସ୍ତକାଳୟ

# ଜବାହରଲାଲ ନେହେରୁ

ତାରା ଅଲୀ ବେଗ

ଅନୁବାଦ

ଜୟନ୍ତ କୁମାର ଦାସ



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

# ଜବାହରଲାଲ ନେହେରୁ



ଏହି ଚିତ୍ରଟି ପ୍ରାୟ ଶହେ ବର୍ଷ ତଳର । ମୋତିଲାଲ ନେହେରୁ ଏବଂ ତାଙ୍କ ପତ୍ନୀ ସ୍ୱରୂପା ରାଣୀଙ୍କର ପ୍ରଥମ ସନ୍ତାନ ଏହି ଶିଶୁଟି ସେତେବେଳେ ମାତ୍ର କେଇମାସର । ସେମାନେ ତାହାର ନାମ ଦେଇଥିଲେ ଜବାହରଲାଲ । ସତାବନ ବର୍ଷ ପରେ ସେହି ଜବାହରଲାଲ ହେଲେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ।

ଜବାହରଲାଲଙ୍କର ଜନ୍ମ ହୋଇଥିଲା ୧୮୮୯ ମସିହାରେ । ଇଂରେଜମାନେ ସେତେବେଳକୁ ଶତାଧିକ ବର୍ଷଧରି ଭାରତର ଶାସକ । ମୋତିଲାଲଙ୍କର ପ୍ରବଳ ଇଚ୍ଛାଥିଲା ଦେଶକୁ ସ୍ୱାଧୀନ ରୂପରେ ଦେଖିବାକୁ । ସେ ଚିନ୍ତାବି କରି ନଥିଲେ ଯେ ତାଙ୍କ ପୁଅଙ୍କ ସମୟରେ ହିଁ ଏ ଦେଶ ସ୍ୱାଧୀନ ହୋଇଯିବ । ଭାରତ ଏକ ମୁକ୍ତ ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ପରିଣତ ହୋଇଯିବ ।

ମୋତିଲାଲଙ୍କ ପରିବାର ପ୍ରକୃତରେ କାଶ୍ମୀରରୁ ଆସିଥିଲେ । ଅନେକ ସ୍ଥାନ ଦେଖିସାରି ଶେଷରେ ସେମାନେ ଆଗ୍ରାରେ ସ୍ଥାୟୀ ଭାବରେ ରହିଥିଲେ । ଏହିଠାରେ ମୋତିଲାଲ ଅଧ୍ୟୟନ କରିଥିଲେ । ସ୍କୁଲ ଏବଂ କଲେଜ ଯାଇଥିଲେ । ଶୈଶବାବସ୍ଥାରୁ ସେ ଖୁବ୍ ଦୁଷ୍ଟ ଥିଲେ । ଅଧ୍ୟୟନ ଅପେକ୍ଷା କ୍ରୀଡ଼ାରେ ତାଙ୍କର ଆଗ୍ରହ ଅଧିକ ଥିଲା । ସେଥିପାଇଁ ଚଞ୍ଚଳ ମସ୍ତିଷ୍କ ମୋତିଲାଲ ସ୍ନାତକ ହେବା ପୂର୍ବରୁ କଲେଜ ତ୍ୟାଗ କରିଥିଲେ ।



ମୋତିଲାଲ ନେହେରୁ ତାଙ୍କର ଉରମ ପୋଷାକରେ

ମୋତିଲାଲ ଥିଲେ ଉଚ୍ଚାଭିଳାଷୀ, ସେ ଖୁବ୍ ଧନୀ ହେବାକୁ ଚାହୁଁଥିଲେ । ସେତେବେଳେ କେବଳ ଓକିଲମାନେ ପ୍ରଚୁର ରୋଜଗାର କରୁଥିଲେ । ସେଥିପାଇଁ ସେ ଓକିଲାତି ପଢ଼ିଲେ । ଅଧ୍ୟୟନ କାଳରେ ସେ କଠିନ ପରିଶ୍ରମ କରିଥିଲେ । ତେଣୁ ଆଇନ ପାସ୍ ସମୟରେ ତାଙ୍କୁ ଗୋଟିଏ ସ୍ୱର୍ଣ୍ଣ ପଦକ ମଧ୍ୟ ମିଳିଥିଲା । ପରିଶ୍ରମ କରି ସେ ଦେଶର ଜଣେ ପ୍ରସିଦ୍ଧ ଆଇନଜୀବୀ ଭାବରେ ଗଣାଗଲେ ।

ମୋତିଲାଲଙ୍କୁ ପାଶ୍ଚାତ୍ୟ ଜୀବନ ବେଶ୍ ଆକୃଷ୍ଟ କରିଥିଲା । ସେ ପାରମ୍ପରିକ ଭାରତୀୟ ଧୋତିଛାଡ଼ି ସାହେବଙ୍କ ପରି କୋର୍ଟ, ପ୍ୟାଣ୍ଟ, ଟାଇ ପିନ୍ଧିବା ଆରମ୍ଭ କଲେ । ଇଉରୋପୀୟମାନଙ୍କ ପରି କଣ୍ଟାକାମ୍‌ଚରେ ଖାଦ୍ୟ ମଧ୍ୟ ଖାଇଲେ । ଜବାହରଲାଲ ତେଣୁ ବାଲ୍ୟାବସ୍ଥାରୁ ଇଂଲଣ୍ଡରୁ



ସାଇକେଲ୍‌ରେ ଜବାହରଲାଲ୍

ଅଣାଯାଇଥିବା ପୋଷାକ ପରିଧାନ କରୁଥିଲେ । ଟିପାପ୍ୟାଣ୍ଟ, ଆଣ୍ଠୁରେ ବୋତାମ, ବଡ଼ କଲରଯୁକ୍ତ ଭେଲଭେଟ୍‌ର ଜ୍ୟାକେଟ୍, ତା' ସହିତ ଗଳାର ଚାରିପାଖରେ ପ୍ରଶସ୍ତ ପାଛୁଡ଼ା । ତା'ଛଡ଼ା ସେ ଯେତେବେଳେ ଖରାରେ ଖେଳୁଥିଲେ, ଗୋଟିଏ ସୋଲର ଗୋଲ ଟୋପି ମଧ୍ୟ ପିନ୍ଧୁ ଥିଲେ । ସେଥିରେ ରିବନ୍‌ମାନ ପଛରେ ଝୁଲୁଥିଲା ।

ଆଇନ ବ୍ୟବସାୟ ଆରମ୍ଭ କଲାପରେ ମୋତିଲାଲ ଆଲ୍ଲାହାବାଦରେ ଗୋଟିଏ ସୁନ୍ଦର ଗୃହ ନିର୍ମାଣ କଲେ । ତାଙ୍କ ଘରର ଚତୁଃପାର୍ଶ୍ୱରେ କେବଳ ଇଂରେଜ ପରିବାରମାନେ ବାସ କରୁଥିଲେ ।



ଆନନ୍ଦ ଭବନ

ଗୃହର ନାମ ସେ ଦେଇଥିଲେ 'ଆନନ୍ଦ ଭବନ' । ଆନନ୍ଦର ଏ ଭବନରେ ପ୍ରକୃତରେ ସ୍ୱର୍ଗର ସମସ୍ତ ସୁଖ ମିଳୁଥିଲା । ଟେନିସ୍ କ୍ରୀଡ଼ା ପାଇଁ ଏକ କ୍ରୀଡ଼ାଙ୍ଗନ, ସନ୍ତରଣ ପାଇଁ ପୁଷ୍କରିଣୀ ଏବଂ ତା' ଛଡ଼ା ଏକ ବୃହତ ସୁନ୍ଦର ବଗିଚା ମଧ୍ୟ ଥିଲା । ଉତ୍ତମ ରୂପେ ଏହାକୁ ସଜେଇ ରଖିବା ପାଇଁ ବହୁ ଭୃତ୍ୟ ଏବଂ ମାଳୀଙ୍କୁ ନିଯୁକ୍ତ କରାଯାଇଥିଲା ।

ପ୍ରାସାଦ ସଦୃଶ୍ୟ ଏହି ଗୃହରେ ଜବାହରଲାଲ ତାଙ୍କର ଶୈଶବାବସ୍ଥା ଅତିବାହିତ କରିଥିଲେ ।

ଗୃହରେ ଏତେ ସୁଖ ଓ ସମୃଦ୍ଧି, ପିତାମାତା ଓ ଭୃତ୍ୟମାନଙ୍କର ପ୍ରଚୁର ସ୍ନେହ ସତ୍ତ୍ୱେ ଜବାହରଲାଲ ଥିଲେ ସମ୍ପୂର୍ଣ୍ଣ ଏକାକୀ । ଏଗାର ବର୍ଷ ବୟସ ପର୍ଯ୍ୟନ୍ତ ସେ ଥିଲେ ଏକମାତ୍ର ଶିଶୁ । ପିତା ତାଙ୍କର ବିଶେଷ ଯତ୍ନ ପାଇଁ ଭୃତ୍ୟର ବ୍ୟବସ୍ଥା କରିଥିଲେ । ପଢ଼େଇବା ପାଇଁ ଘରକୁ ଜଣେ ଶିକ୍ଷକ ଆସୁଥିଲେ । ସେଥିପାଇଁ ସ୍କୁଲକୁ ଯିବା ସୁଯୋଗ ତାଙ୍କର ନଥିଲା କିମ୍ବା ଆପଣା ବୟସର



ମୋତିଲାଲ୍ ନେହେରୁ, ମୁନ୍‌ସୀ ମୁବାରକ ଅଲୀ ପଛରେ



ଗଙ୍ଗାଧର ମେହେର

ପିଲାମାନଙ୍କ ସହିତ ମିଶିବାର ସୁବିଧା ସେ ପାଉନଥିଲେ । ତାଙ୍କର ଏକମାତ୍ର ବନ୍ଧୁ ଥିଲେ, ପିତାଙ୍କ ଅଫିସ୍‌ର ଜଣେ କିରାଣୀ, ମୁନ୍‌ସୀ ମୋବାରକ ଅଲ୍ଲୀ ।

ନିଜର କୌଣସି ଅଭାବ ଅସୁବିଧା ହେଲେ ସେ ମୁନ୍‌ସୀଙ୍କୁ କହୁଥିଲେ । ମୁନ୍‌ସୀ ମୋବାରକ ଅଲ୍ଲୀ ଗଳ୍ପ କହିବାରେ ଥିଲେ ଧୁରନ୍ଧର । ଜବାହରଲାଲ ତେଣୁ ତାଙ୍କ ନିକଟରେ ଘଣ୍ଟା ଘଣ୍ଟା ଧରି ଗଳ୍ପ ଶୁଣିବାରେ ସମୟ ବିତାଉଥିଲେ । କେବଳ ପୁରାଣ ବା ଆରବ୍ୟ କାହାଣୀ ନୁହେଁ, ସେ ତାଙ୍କୁ ଇତିହାସ, ଯୁଦ୍ଧ, ବୀରତ୍ୱ, ରାଜା, ମହାରାଜା ଏବଂ ସାହସିକ ଅଭିଯାନର କାହାଣୀମାନ ବାଛି ବାଛି ଶୁଣାଉଥିଲେ । ସେତେବେଳେ ସେ ନିଜ ଅତୀତ ଓ ପୂର୍ବ ପୁରୁଷଙ୍କ ସମ୍ପର୍କରେ ଜାଣିପାରିଥିଲେ । ସେମାନେ ବିଭିନ୍ନ ରାଜଦରବାରରେ ଉଚ୍ଚ ପଦବୀରେ କାର୍ଯ୍ୟ କରିଥିଲେ । ଏପରିକି ତାଙ୍କର ପିତାମହ ଗଙ୍ଗାଧର ନେହେରୁ ଯେ ପୂର୍ବରୁ ଦିଲ୍ଲୀରେ ଦାରୋଗା ଥିଲେ, ସେକଥା ମଧ୍ୟ ମୁନ୍‌ସୀ ତାଙ୍କୁ କହିଥିଲେ ।

କୌଣସି ପର୍ବପର୍ବାଣୀ ପଡ଼ିଲେ ଜବାହରଲାଲଙ୍କର ନୀରସ ଜୀବନ ସରସ ହୋଇଉଠୁଥିଲା । ଚତୁର୍ଦ୍ଦିଗରେ ଆନନ୍ଦର ଢେଉ ଖେଳିଯାଉଥିଲା । ଏକଦା ହୋଲିଖେଳ ବେଳେ ତାଙ୍କର ଖୁଡ଼ି ଜଣେ ଖେଳାଳୀ ଉପରେ ବିରକ୍ତ ହେଉଥିବାର ସେ ଶୁଣିଲେ । ଖୁଡ଼ି ତାଙ୍କର ଗୋଟିଏ ଧଳା ପରିଷ୍କାର ଲୁଗା ପିନ୍ଧିଥାନ୍ତି । ସ୍ନେହରେ ସେ ତାଙ୍କ ପାଖକୁ ଗଲେ ଏବଂ ତାଙ୍କ କୋଳରେ ବସିପଡ଼ିଲେ । ତା'ପରେ ମେଞ୍ଚାଏ ଅବିର ନେଇ ତାଙ୍କ ଦେହସାରା ବୋଳିଦେଲେ । ସେହିପରି ଇଦ୍‌ବେଳେ ମଧ୍ୟ ସେ ସୁନ୍ଦର ପୋଷାକ ପିନ୍ଧି ମୁନ୍‌ସୀଙ୍କ ଘରକୁ ଯାଉଥିଲେ । ସେଠି ନାନା ପ୍ରକାର ପିଠାପଣା ସାଙ୍ଗକୁ ସିମେହି ଖିରୀ ଖୁବ୍ ଆଗ୍ରହରେ ଖାଉଥିଲେ ।

କାହାରି ବିବାହ ଉତ୍ସବରେସେ ଆନନ୍ଦରେ ଆତ୍ମହରା ହୋଇପଡୁଥିଲେ । ତାହା ଯଦି ପୁଣି ଆଲାହାବାଦରୁ ବାହାରେ କୋଉଠି ହେଉଥିଲା, ତେବେ ଆନନ୍ଦ ଆହୁରି ବଢ଼ି ଯାଉଥିଲା । ଯିବା ଆସିବାର ଉଲ୍ଲାସ ସହିତ ବନ୍ଧୁବାନ୍ଧବଙ୍କର ପିଲାମାନଙ୍କ ସହିତ ମିଶିବାର ସୁଯୋଗରେ ଯେଉଁ ଆନନ୍ଦ ମିଳୁଥିଲା, ତାହାତ କହିବାର ନୁହେଁ । ସେତେବେଳେ ଦିନଗୁଡ଼ାକ କିପରି କଟିଯାଉଥିଲା, ମୋଟେ ଜଣାପଡୁନଥିଲା । ନିଃସଙ୍ଗରେ କାଟିଥିବା ଦିନଗୁଡ଼ିକ ଭୁଲି ଜବାହରଲାଲ ଆନନ୍ଦରେ ଆତ୍ମବିଭୋର ହୋଇପଡୁଥିଲେ ।

ଗୋଟିଏ ଦିନକୁ ସେ ବର୍ଷସାରା ଚାହିଁରହୁଥିଲେ, ତା'ହେଲା ତାଙ୍କର ଜନ୍ମଦିନ । ସେଦିନ ସେ'ହିଁ ଥିଲେ ଉତ୍ସବର ମୁଖ୍ୟବିନ୍ଦୁ । ଅତି ପ୍ରତ୍ୟୁଷରୁ ତାଙ୍କୁ ଓଜନ କରାଯାଉଥିଲା । ଆଉ ତାଙ୍କ ସମାନ ଓଜନର ଗହମ ଓ ପଇସା ଦରିଦ୍ରମାନଙ୍କ ମଧ୍ୟରେ ବଣ୍ଟାଯାଉଥିଲା । ସେଦିନ ସେ ନୂତନ ପୋଷାକ ପିନ୍ଧି ବସନ୍ତି । ତାଙ୍କର ପିତା, ମାତା, ସାଙ୍ଗ, ସାଥୀ, ବନ୍ଧୁବାନ୍ଧବ ଜଣକପରେ ଜଣେ ଆସି ତାଙ୍କୁ ଉପହାର ଦେଇଯାଆନ୍ତି । ସେଥିରେ ଶହଶହ ଅତିଥିଙ୍କୁ ନିମନ୍ତ୍ରଣ କରାଯାଇଥାଏ । ତଥାପି ତାଙ୍କ ମନରେ ଗୋଟିଏ ଦୁଃଖ ରହିଯାଉଥାଏ ଯେ ଏ ଜନ୍ମଦିନଟି ବର୍ଷକୁ ମାତ୍ର ଥରେ ଆସୁଛି ।

ମନେରଖିବା ପରି ଅନ୍ୟ ଏକ ଘଟଣା ହେଲା ତାଙ୍କର ବ୍ରତଘର । ସେଦିନ ତାଙ୍କର ବାଳ୍

ପକାଯାଇଥିଲା । ସେ ଗୋଟିଏ ପବିତ୍ର ପଇତା ପକାଇଥିଲେ । ଏ ଉତ୍ସବରେ ନିମନ୍ତ୍ରିତ ଅତିଥିଙ୍କ ସଂଖ୍ୟା ସହସ୍ରାଧିକ ହୋଇଥିଲା ।

ପିଲାଦିନର ଆଉ ଦୁଇଟି ଘଟଣାକୁ ମଧ୍ୟ ସେ ଆଦୌ ଭୁଲିପାରିନଥିଲେ । ଗୋଟିଏ ଘଟିଥିଲା ଯେତେବେଳେ ତାଙ୍କୁ ପାଞ୍ଚ ଛଅ ବର୍ଷ ହୋଇଥିଲା । ସେଦିନ ସେ ଦେଖିଲେ ତାଙ୍କ ବାପାଙ୍କ ଟେବୁଲ ଉପରେ ଦୁଇଟି କଲମ ଥୁଆହୋଇଛି । ସେଥିରୁ ଗୋଟିଏ ନେବାକୁ ତାଙ୍କର ଭାରି ଇଚ୍ଛା ହେଲା । ସେ ମନେମନେ ଭାବିଲେ, ବାପାଙ୍କର ଦୁଇଟି କଲମ କ'ଣ ହେବ ? ସେଥିପାଇଁ ସେ ସେଥିରୁ ଗୋଟିଏ ନେଇଗଲେ । କଲମଟି ନଦେଖି ବାପା ତାଙ୍କର ଚାକରକୁ ଖୋଜିବା ପାଇଁ କହିଲେ । ଜବାହରଲାଲ ଭୟରେ ଏପରି ଥରହର ହୋଇଗଲେ ଯେ କଲମ ନେଇଥିବା କଥା ପ୍ରକାଶ ମଧ୍ୟ



ଉପନୟନ ପରେ ଜବାହରଲାଲ୍

କରିପାରିଲେ ନାହିଁ । ଶେଷରେ କଲମଟି ମିଳିଲା, ସବୁକଥା ଜଣା ମଧ୍ୟ ପଡ଼ିଲା । ବାପା ଭୀଷଣ ରାଗିଗଲେ । ପୁଅ ଯେ ଖାଲି ତାଙ୍କର ଚୋରୀ କରିଛି, ସେକଥା ନୁହେଁ, ସେ ଏତେ ଭୀରୁ ଯେ, ସତ୍ୟକୁ ମଧ୍ୟ ଗୋପନ ରଖିଛି । ରାଗରେ ସେ ପୁଅକୁ ଖୁବ୍ ମାଡ଼ ଦେଲେ । ଜବାହରଲାଲ ଜୋରରେ କାନ୍ଦିଲେ । କାନ୍ଦି କାନ୍ଦି ମା'ଙ୍କ ପାଖକୁ ଚାଲିଗଲେ । ମାଆ ତାଙ୍କୁ ସ୍ନେହରେ ଆଉଁଷି ଦେଲେ । ସେ ଦିନଠାରୁ ବାପାଙ୍କ ପ୍ରତି ତାଙ୍କର ସ୍ନେହ ଊଣା ହେଲାନାହିଁ ସତ, କିନ୍ତୁ ତାଙ୍କୁ ସେ ମନେମନେ ଖୁବ୍ ଭୟକଲେ ।

ତାଙ୍କୁ ଆଠବର୍ଷ ହୋଇଥିଲାବେଳେ ଅନ୍ୟ ଘଟଣାଟି ଘଟିଥିଲା । ଦିନେ ସେ ଘୋଡ଼ାରେ ବସି ଏକୁଟିଆ ବୁଲିଯାଇଥିଲେ । ବାଟରେ କେଉଁଠି ସେ ଘୋଡ଼ାରୁ ଖସି ପଡ଼ିଥିଲେ । ଘୋଡ଼ା ଯେତେବେଳେ



ଘୋଡ଼ା ପିଠିରେ ଜବାହର୍

ଏକୁଟିଆ ଘରକୁ ଫେରିଆସିଲା, ଜବାହରଲାଲଙ୍କୁ ନଦେଖି ଘରେ ଚହଳ ପଡ଼ିଗଲା । ତାଙ୍କର ବାପା, ଚାକରମାନେ ସମସ୍ତେ ତାଙ୍କୁ ଖୋଜିବାକୁ ବାହାରି ପଡ଼ିଲେ । ଦେଖାଗଲା, ଜବାହରଲାଲଙ୍କର କିଛି ହୋଇନାହିଁ । ବାଟରେ ସେ ଧିରେଧିରେ ଘରକୁ ଫେରୁଛନ୍ତି । ତା'ପରଠାରୁ ସମସ୍ତଙ୍କ ପାଖରେ ସେ ବୀର ହୋଇଗଲେ ।

ଜବାହରଲାଲ ତାଙ୍କ ମାଆଙ୍କୁ ଆଦୌ ଭୟ କରୁନଥିଲେ । ସେ ଜାଣିଥିଲେ ଯେ ତାଙ୍କର କୌଣସି ଭୁଲ ମାଆଙ୍କ ଦୃଷ୍ଟିରେ ପଡ଼ିବ ନାହିଁ । ମାଆ ତାଙ୍କର ସମସ୍ତ ପୂଜା ଉତ୍ସବ ଅତ୍ୟନ୍ତ ନିଷ୍ଠାର ସହିତ ପାଳନ କରୁଥିଲେ, ଯଦିଓ ମୋତିଲାଲଙ୍କର ଏ ଧର୍ମାନୁଷ୍ଠାନରେ ମୋଟେ ବିଶ୍ୱାସ ନଥିଲା ।



ସ୍ୱରୂପରାଣୀ

ଏପରିକି ଇଉରୋପରୁ ଫେରିବା ପରେ ଯଜ୍ଞୋପବୀତ ମଧ୍ୟ ବଦଳାଇବାକୁ ସେ ମନା କରିଦେଇଥିଲେ । ଜବାହରଲାଲ ପିତାଙ୍କର ଏହି ଗୁଣଟିକୁ ଆହରଣ କରିନେଇଥିଲେ । ନେହେରୁ ପରିବାରରେ ପର୍ଦ୍ଦା ନଥିଲା । ସେହି ପରିବେଶରେ ବାଳକ ବାଳିକାମାନେ ବେଶ୍ ସହଜ ଭାବରେ ପରସ୍ପର ସହିତ ମିଳାମିଶା କରୁଥିଲେ ।

ଜବାହରଲାଲଙ୍କ ଘରେ ସବୁକଥା ମୁକ୍ତ ଭାବରେ ଆଲୋଚିତ ହେଉଥିଲା । ତାହା ଧର୍ମ କିମ୍ବା ପୁରାତନ ପରମ୍ପରା ବିଷୟରେ ହେଉ ଅବା ଇଂରେଜମାନଙ୍କର ଭାରତୀୟ ମାନଙ୍କ ପ୍ରତି ଦୁର୍ବ୍ୟବହାର ବିଷୟରେ ହେଉ । ଇଂରେଜମାନେ ଅନେକ ସ୍ଥାନରେ ଭାରତୀୟମାନଙ୍କୁ ନିଜଠାରୁ ପୃଥକ କରି ରଖୁଥିଲେ । ଉଦାହରଣ ସ୍ୱରୂପ, ଅନେକ ରେଳଡ଼ବା କେବଳ ଇଉରୋପୀୟମାନଙ୍କ ପାଇଁ ସଂରକ୍ଷିତ ହୋଇରହୁଥିଲା । ଯାଗାଥିଲେ ମଧ୍ୟ ଭାରତୀୟମାନେ ସେଥିରେ ଯାତ୍ରା କରିପାରୁନଥିଲେ । ପାର୍କ ବା ସେହିପରି ସାଧାରଣ ସ୍ଥାନମାନଙ୍କରେ ଶ୍ୱେତାଙ୍ଗମାନଙ୍କ ପାଇଁ ଉଦ୍ଦିଷ୍ଟ ଚୌକି ଓ ବେଞ୍ଚ୍ ଭାରତୀୟମାନେ ବ୍ୟବହାର କରିପାରୁନଥିଲେ । ଏପରିକି ଜଣେ ଇଂରେଜ ଜଣେ ଭାରତୀୟକୁ ମାରିଦେଲେ ତା'ର ବିଚାର ପାଇଁ ଇଂରେଜ ବିଚାରକ ନିଯୁକ୍ତି କରାଯାଉଥିଲା ଏବଂ ଦୋଷୀ ପ୍ରାୟତଃ ବିନାଦଣ୍ଡରେ ଖଲାସ ପାଇଯାଉଥିଲା ।

ପୃଥିବୀର ସମସାମୟିକ ଘଟଣାବଳୀମାନ ମଧ୍ୟ ତାଙ୍କ ଘରେ ବାରମ୍ବାର ଆଲୋଚିତ ହେଉଥିଲା । ବିଶ୍ୱର ବିଭିନ୍ନ ସ୍ଥାନରେ ଚାଲିଥିବା ଯୁଦ୍ଧ ଓ ବିଦ୍ରୋହ ସମ୍ପର୍କରେ ସାମ୍ପ୍ରତିକ ସମ୍ବାଦମାନ ଜାଣିବା ପାଇଁ ଜବାହରଲାଲ ବେଶ ପିଲାଦିନୁ ସମ୍ବାଦପତ୍ର ପଢ଼ିବା ଆରମ୍ଭ କରିଦେଇଥିଲେ । ତାଙ୍କ ମନ ସର୍ବଦା ଦଳିତଙ୍କ ଆଡ଼କୁ ଢଳି ରହୁଥିଲା । ନିଜର ଆତ୍ମଜୀବନୀରେ ଜବାହ ରଲାଲ ଲେଖିଛନ୍ତି, "ମୁଁ ବୀରପରି କାର୍ଯ୍ୟ କରିବାର ସ୍ୱପ୍ନ ଦେଖୁଥିଲି । ତାହାଥିଲା ହାତରେ ଅସ୍ତ୍ର ନେଇ ଭାରତ ପାଇଁ ମୁଁ ଯୁଦ୍ଧ କରିବି ଏବଂ ତାକୁ ମୁକ୍ତି ଆଣିଦେବି ।"

ଜବାହରଲାଲଙ୍କୁ ଏଗାର ବର୍ଷ ବେଳେ ତାଙ୍କୁ ପଢ଼େଇବା ପାଇଁ ଜଣେ ଇଂରେଜ ଶିକ୍ଷକ, ଫର୍ଡ଼ିନାଣ୍ଡ୍ ବ୍ରୁକସ୍ ନିଯୁକ୍ତି ପାଇଥିଲେ । ସେ ତାଙ୍କୁ ପଢ଼ିବାର ଅଭ୍ୟାସ ଏବଂ ଇଂରେଜୀ କବିତା ପ୍ରତି ଆଗ୍ରହୀ କରାଇ ଦେଇଥିଲେ । ବ୍ରୁକସ୍ ଗୋଟିଏ ଛୋଟ ଗବେଷଣାଗାର ମଧ୍ୟ ତାଙ୍କପାଇଁ ତିଆରି କରିଦେଇଥିଲେ, ଯେଉଁଥିରେ ଜବାହରଲାଲ ପଦାର୍ଥ ବିଦ୍ୟା ଓ ରସାୟନ ଶାସ୍ତ୍ରର ସରଳ ପରୀକ୍ଷାମାନ ବହୁସମୟ ଧରି କରୁଥିଲେ ।

ଯେତେବେଳେ ଜବାହରଲାଲଙ୍କୁ ପନ୍ଦର ବର୍ଷ ହୋଇଥିଲା, ମୋତିଲାଲ ତା'ଙ୍କୁ ଇଂଲଣ୍ଡରେ ପଢ଼ାଇବାକୁ ସ୍ଥିର କଲେ । ହ୍ୟାରୋରେ ଥିବା ବିଖ୍ୟାତ ସ୍କୁଲରେ ତାଙ୍କ ନାମ ଲେଖାହୋଇଗଲା । ସେ ସ୍କୁଲ ସମ୍ପର୍କରେ ଜବାହରଲାଲ କୁହନ୍ତି, "ମୁଁ ସେଠି ନିଜକୁ ଖାପ ଖୁଆଇ ପାରୁନଥିଲି, ମୋତେ ଲାଗୁଥିଲା ମୁଁ ସେମାନଙ୍କ ମଧ୍ୟରେ ଜଣେ ନୁହେଁ ।" ଇଂରେଜ ପିଲାମାନଙ୍କ ପାଇଁ କ୍ରୀଡ଼ା ଥିଲା ମୁଖ୍ୟ, କିନ୍ତୁ ଜବାହରଲାଲଙ୍କର ଆଗ୍ରହଥିଲା ବହୁମୁଖୀ । ସେ ପୁସ୍ତକ, ପତ୍ରିକା ଓ ସମ୍ବାଦପତ୍ରର ଜଣେ ଆଗ୍ରହୀ ପାଠକ ଥିଲେ । ଏଠାକୁ ଆସିବା ପରେ ସେ ରାଜନୀତିର ଧାରା ସହିତ ମଧ୍ୟ ଜଡିତ

ହୋଇପଡ଼ିଲେ । ଇଂରେଜ ବାଳକମାନଙ୍କୁ ସେ ବୋକା ବୋଲି ଭାବୁଥିଲେ । ସେଥିପାଇଁ ସେ ଗୋଟିଏ ଛୋଟ ଘଟଣା ବର୍ଣ୍ଣନା କରିଛନ୍ତି :

ଥରେ ଶ୍ରେଣୀରେ ତାଙ୍କ ଶିକ୍ଷକ ଇଂଲଣ୍ଡରେ ହୋଇଥିବା ସାଧାରଣ ନିର୍ବାଚନ ସମ୍ପର୍କରେ କେତେକ ପ୍ରଶ୍ନ ପଚାରିଥିଲେ । ତାହାର ଉତ୍ତର କେବଳ ଜବାହରଲାଲ ହିଁ ଦେଇପାରିଥିଲେ ।



ହାରୋରେ

ସେତେବେଳେ ଆକାଶରେ ଉଡ଼ାଜାହାଜ ଉଡ଼ାଇବା ପାଇଁ ଚଳାଇଥିବା ମନୁଷ୍ୟର ଉଦ୍ୟମରେ ଜବାହରଲାଲ ବେଶ୍ ବିମୋହିତ ହୋଇପଡ଼ିଥିଲେ । 1905ରେ ରାଇଟ୍ ଭ୍ରାତୃଦ୍ୱୟଙ୍କର ପ୍ରଥମ ଉଡ଼ାଣ ଖବର ଶୁଣି ସେ ଉଲ୍ଲସିତ ହୋଇଯାଇଥିଲେ । ଏପରିକି ସପ୍ତାହ ଶେଷରେ ଆକାଶ ପଥରେ ଘରକୁ ଯାଇ ବୁଲିଆସିବାର ସମ୍ଭାବ୍ୟ ସ୍ୱପ୍ନ ମଧ୍ୟ ସେ ଦେଖୁଥିଲେ ।

ଜବାହରଲାଲଙ୍କୁ ହ୍ୟାରୋର ପରିବେଶରେ କିପରି ଶ୍ୱାସରୁଦ୍ଧ ହୋଇଗଲା ପରି ଲାଗୁଥିଲା । ସେଠାରେ ମାତ୍ର ଦୁଇବର୍ଷ କଟାଇସାରି ସେ କେମ୍ବ୍ରିଜ୍‌ର ଟ୍ରିନିଟି କଲେଜରେ ନାମ ଲେଖାଇଥିଲେ । ପାଠରେ ତାଙ୍କର ଖୁବ୍ ବେଶୀ ଆଗ୍ରହ ନଥିଲା । ଟ୍ରିନିଟି କଲେଜରେ ପ୍ରବେଶିକା ପରୀକ୍ଷା ପାଇଁ ନିଜକୁ ପ୍ରସ୍ତୁତ କରୁଥିଲାବେଳେ ସେ ପିତାଙ୍କୁ ଲେଖିଥିଲେ, ''ଗୋଟିଏ ଭଲ କ୍ରିକେଟ ଖେଳରୁ ନିଜକୁ ମୁଁ ଯେ କାମ ଆଡ଼କୁ ଟାଣିଆଣି ପାରିବି, ସେ ବିଷୟରେ ମୋର ସନ୍ଦେହ ଅଛି ।'' ତା'ସତ୍ତ୍ୱେ ବି ସେ କେମ୍ବ୍ରିଜରେ ତିନିବର୍ଷ କାଳ କଟାଇ ପାରିଥିଲେ । ସେ ରସାୟନଶାସ୍ତ୍ର, ଭୂତତ୍ତ୍ୱ, ଉଦ୍ଭିଦ ବିଜ୍ଞାନ ପାଇଁ ନାମ ଲେଖାଇଥିଲେ ମଧ୍ୟ ଇତିହାସ, ରାଜନୀତି, ସାହିତ୍ୟ ଏବଂ ଦର୍ଶନଶାସ୍ତ୍ର ପ୍ରଚୁର ପଢୁଥିଲେ ।

ଜବାହରଲାଲ ସର୍ବଦା ବିପଦର ସମ୍ମୁଖୀନ ହେବାରେ ଆଗ୍ରହୀ ଥିଲେ ଏବଂ ଦୁଃସାହସୀ ହେବାରେ ଆନନ୍ଦ ପାଉଥିଲେ । ନରୱେରେ ଏକଦା ଏହିପରି ସେ ମୃତ୍ୟୁମୁଖରୁ ରକ୍ଷାପାଇଥିବା ଗୋଟିଏ ଘଟଣାର ବର୍ଣ୍ଣନା କରିଛନ୍ତି । ଥରେ ସେ ଦୀର୍ଘ ପର୍ବତାରୋହଣରେ ଯାଉଥିବାବେଳେ ଅତ୍ୟନ୍ତ ଗରମ ଏବଂ ଅପରିଷ୍କାର ଅନୁଭବ କଲେ । ତେଣୁ ସେ ହଠାତ୍ ନିକଟସ୍ଥ ତୁଷାରଯୁକ୍ତ ଖରସ୍ରୋତା ଝରଣାକୁ ଡ଼େଇଁ ପଡ଼ିଲେ । ତା'ପରେ ତାଙ୍କର ଗୋଡ଼ ଖସିଗଲା ଏବଂ ସେ ସ୍ରୋତ ସହିତ ଭାସିଯିବାକୁ ଲାଗିଲେ । ଅଳ୍ପ ଦୂରରେ ଏଇ ପାର୍ବତୀୟ ସ୍ରୋତଟି ଏକ ବୃହତ୍ ପ୍ରପାତରେ ରୂପାନ୍ତରିତ ହୋଇଥିଲା । ତା'ପୂର୍ବରୁ ଜଣେ ବନ୍ଧୁ ଠିକ୍ ସମୟରେ ତାଙ୍କର ଗୋଡ଼ ଧରିପକାଇ ତାଙ୍କୁ ନିରାପଦ ସ୍ଥାନକୁ ଟାଣିଆଣିବାରେ ସମର୍ଥ ହୋଇଥିଲେ ।

କେମ୍ବ୍ରିଜରେ ଥିଲାବେଳେ ଜବାହରଲାଲ ଲଣ୍ଡନର 'ଇନ୍‌ସ ଅଫ୍ କୋର୍ଟ'ରେ ଯୋଗ ଦେଉଥିଲେ ଏବଂ ବାରିଷ୍ଟର ହୋଇପାରିଥିଲେ । ସେତେବେଳେ ଇଂରେଜ ମହିଳାମାନେ ଭୋଟ ଅଧିକାର ପାଇଁ ଆନ୍ଦୋଳନ କରୁଥିଲେ । ଜବାହରଲାଲ ମହିଳାମାନେ ଏହି ଯୁକ୍ତିଯୁକ୍ତ ଅଧିକାର ପାଇବା ଉଚିତ ବୋଲି ମନେକରୁଥିଲେ । ମହିଳାମାନେ ପୁରୁଷମାନଙ୍କ ସହିତ ସବୁକ୍ଷେତ୍ରରେ ସମାନ ଅଧିକାର ପାଇବା ଉଚିତ ବୋଲି ମଧ୍ୟ ତାଙ୍କର ମତ ଥିଲା ।

ଇଂଲଣ୍ଡରେ ସପ୍ତାଧିକ ବର୍ଷ ଅତିବାହିତ କରି ଜବାହରଲାଲ 1912 ରେ ଭାରତକୁ ଫେରିଲେ । ତାଙ୍କ ଭାଷାରେ, ''ମୁଁ ଏକ ଅଦ୍ଭୁତ ଜୀବ ହୋଇଯାଇଥିଲି ଯାହାପାଇଁ କୌଣସି ଭାଷା ନାହିଁ ।''

ଜବାହରଲାଲ ଆଲାହାବାଦ ହାଇକୋର୍ଟରେ ଜଣେ ଆଇନଜୀବୀ ଭାବରେ ଯୋଗଦେଲେ । ତାଙ୍କର ପ୍ରକୃତ ଆଗ୍ରହ କିନ୍ତୁ ରାଜନୀତିରେ ଥିଲା । ସେତେବେଳେ ରାଜନୀତି କ୍ଷେତ୍ରରେ ସେପରି ବିଶେଷ କିଛି ଘଟୁନଥିଲା । ତେଣୁ ତାଙ୍କ ପାଇଁ ଜୀବନ ଏକପ୍ରକାର ବିରକ୍ତିକର ହୋଇପଡ଼ିଥିଲା ।

ପିତାଙ୍କର ଆଇନ ବ୍ୟବସାୟରେ ତାଙ୍କର ସମ୍ପୃକ୍ତି କିପରି ପୀଡ଼ାଦାୟକ, ଆଗ୍ରହଶୂନ୍ୟ ଏବଂ ଲକ୍ଷ୍ୟହୀନ ମନେହେଲା । ସେଥିରୁ ସାମାନ୍ୟ ମୁକ୍ତି ପାଇଁ ସେ ଶିକାରକୁ ଆପଣାର କରିନେଲେ । ତା'ପରେ ଅରଣ୍ୟ ତାଙ୍କ ପାଇଁ ଆଗ୍ରହପ୍ରଦ ମନେହେଲା । ଥରେ କିନ୍ତୁ ଗୋଟିଏ ନିରୀହ ମୃଗକୁ ଗୁଳିମାରିଦେଇ, ତା'ର ଚକ୍ଷୁରେ ଯନ୍ତ୍ରଣାର ଯେଉଁ ଚିହ୍ନ ସେ ଦେଖିଥିଲେ, ତା'ପରଠାରୁ ଶିକାରକୁ



କେମ୍ବ୍ରିଜରୁ ଗ୍ରାଜୁଏଟ୍

ସେ ସବୁଦିନ ପାଇଁ ତ୍ୟାଗକଲେ ।

ରାଜନୀତି ସମ୍ପର୍କିତ ଆଲୋଚନା ବେଳେବେଳେ ପିତାପୁତ୍ରଙ୍କ ମଧ୍ୟରେ ତିକ୍ତତା ସୃଷ୍ଟିକରୁଥିଲା । ଜବାହରଲାଲ ଗଭୀର ଭାବରେ ଚିନ୍ତା କରୁଥିଲେ ଯେ, ଭାରତୀୟମାନେ ଇଂରେଜମାନଙ୍କୁ ଏପରି



ମୋତିଲାଲ୍‌ଙ୍କ ସହିତ

ଭୟ କରିବାର କୌଣସି କାରଣ ନାହିଁ । ସେମାନେ ତାଙ୍କର ପ୍ରଭୁତ୍ୱକୁ ପ୍ରତ୍ୟକ୍ଷ ଭାବରେ ପ୍ରତ୍ୟାଖ୍ୟାନ କରିବା ଆବଶ୍ୟକ । ଅନ୍ୟ ପକ୍ଷରେ ମୋତିଲାଲ ଭାବୁଥିଲେ, ଇଂରେଜମାନଙ୍କୁ ସବୁକଥା ବୁଝାଇଦେଲେ, ତାଙ୍କର ଅନ୍ୟାୟଗୁଡ଼ିକ ପ୍ରତି ସଚେତନ କରାଇଦେଲେ, ସେମାନେ ହୁଏତ ବୁଝିଯିବେ । ନଚେତ୍ ଆବଶ୍ୟକସ୍ଥଳେ ଏଥିପାଇଁ ଆଇନର ସାହାଯ୍ୟ ମଧ୍ୟ ନିଆଯାଇପାରେ ।

ଯେତେବେଳେ ଜବାହରଲାଲଙ୍କୁ ସତେଇଶ ବର୍ଷ, ତାଙ୍କ ପିତା କମଳା କାଉଲଙ୍କ ସହିତ



ଜବାହରଲାଲ୍ ଓ କମଳା

ତାଙ୍କର ବିବାହ ବ୍ୟବସ୍ଥା କରିଦେଲେ । କମଳା କେବଳ ହିନ୍ଦୀ ଓ ଉର୍ଦ୍ଦୁ ଜାଣିଥିଲେ । ନେହେରୁ ପରିବାରର ପାଶ୍ଚାତ୍ୟ ଢାଞ୍ଚା ସହିତ ତାଙ୍କୁ ପରିଚିତ କରାଇ ପୁତ୍ରର ଉପଯୁକ୍ତ ପତ୍ନୀ ରୂପେ ଗଢ଼ିବାକୁ ମୋତିଲାଲ କମଳାଙ୍କୁ ଜଣେ ଇଂରେଜ ଗଭର୍ଣ୍ଣେସ୍‌ଙ୍କ ପାଖକୁ ପଠାଇଥିଲେ ।

ବିବାହ ବେଶ୍ ଧୁମ୍‌ଧାମରେ ହୋଇଥିଲା । ଏଥିପାଇଁ ଏକ ସପ୍ତାହବ୍ୟାପୀ ଉତ୍ସବର ବ୍ୟବସ୍ଥା ହୋଇଥିଲା । ବରଯାତ୍ରୀଙ୍କୁ ଆଲାହାବାଦରୁ ଦିଲ୍ଲୀ ପର୍ଯ୍ୟନ୍ତ ନେବାପାଇଁ ଏକ ବିଶେଷ ରେଳଗାଡ଼ିର



ବିବାହ ଉତ୍ସବବେଳେ ସମସ୍ତେ ଏକାଠି

ବନ୍ଦୋବସ୍ତ ମଧ୍ୟ କରାଯାଇଥିଲା । ବିବାହ ପରେ ସମସ୍ତ ପରିବାର ଛୁଟି କଟାଇବା ପାଇଁ କାଶ୍ମୀର ଯାଇଥିଲେ । ଏ ସମୟରେ ମଧ୍ୟ ଜବାହରଲାଲ ତାଙ୍କର "ଆତ୍ମଜୀବନୀ"ରେ ଏକ ବିପଦପୂର୍ଣ୍ଣ ଘଟଣାର ବର୍ଣ୍ଣନା କରିଛନ୍ତି । ଏଇଠି ଥରେ ତୁଷାରଯୁକ୍ତ ପର୍ବତ ଉପତ୍ୟକା ଦେଇ ଗଲାବେଳେ ଏକ ବିରାଟ ଖାତ ମଧ୍ୟରେ ସେ ପଡ଼ିଯାଇଥିଲେ । ଦୁଃସାହସ ଏବଂ ବିପଦ ତାଙ୍କୁ ସବୁବେଳେ ଆକର୍ଷଣ କରିଆସିଥିଲା ।

1914 ବେଳକୁ ଭାରତୀୟ ରାଜନୀତିରେ ଗାନ୍ଧିଜୀଙ୍କର ହଠାତ ଆବିର୍ଭାବ ଘଟିଲା । ଦକ୍ଷିଣ ଆଫ୍ରିକାରେ ଗୋରା ଶାସନ ବିରୁଦ୍ଧରେ ତାଙ୍କ ଲଢ଼େଇ କଥା ଲୋକେ ଶୁଣିଥିଲେ ଏବଂ ଭାରତକୁ ତାଙ୍କର ଆଗମନକୁ ସତୃଷ୍ଣ ନୟନରେ ପ୍ରତୀକ୍ଷା କରିଥିଲେ । ଏତେଦିନ ପରେ ଯା'ହେଉ ଜଣେ କେହି ସାଧାରଣ ମଣିଷର ଭାଷା କହିଲେ ଏବଂ ସେମାନେ ବୁଝିଲାପରି କାର୍ଯ୍ୟ ମଧ୍ୟ କଲେ । ଗାନ୍ଧିଜୀଙ୍କ ସମ୍ପର୍କରେ ଜବାହରଲାଲ କହିଥିଲେ, "ସେ ଥିଲେ ଗୋଟିଏ ଆଲୋକର ଉତ୍ସ, ଯାହା ଅନ୍ଧକାରକୁ ଭେଦ କରିଥିଲା ।"

ସେତେବେଳେ ଆଉ ଗୋଟିଏ ଘଟଣା ଘଟିଲା ଯାହା ଜବାହରଲାଲଙ୍କୁ ରାଜନୀତି ଚକ୍ରରେ ଝାସଦେବା ପାଇଁ ନିଶ୍ଚିତ କରିଦେଲା । ତାହାଥିଲା ପଞ୍ଜାବର ଜାଲିଆନାୱାଲାବାଗ୍‌ଠାରେ ବୈଶାଖ ଉତ୍ସବ ପାଳନ ପାଇଁ ଏକତ୍ରିତ ହୋଇଥିବା ନିରୀହ ମଣିଷଙ୍କ ଭିତରୁ 340 ଜଣଙ୍କର ନିର୍ଦ୍ଦୋଷ ହତ୍ୟାକାଣ୍ଡ । ଅମୃତସର ସହରର ଏକ ପ୍ରାଚୀରଘେରା ଅଞ୍ଚଳରେ 1919 ଏପ୍ରିଲ 13 ତାରିଖର ଏହି ନିର୍ମମ ହତ୍ୟାକାଣ୍ଡରେ ନାରୀ ଏବଂ ଶିଶୁ ମଧ୍ୟ ଥିଲେ । ଜଣେ ଇଂରେଜ ଜେନେରାଲ ଡାୟାର ସେହି ବାଗ୍‌ର ବାଟରେ ସୈନ୍ୟ ଜଗେଇ ଦେଇଥିଲେ ଓ କୌଣସି ସତର୍କ ନକରାଇ ଗୁଳି କରିବାକୁ ଆଦେଶ ଦେଇଥିଲେ । ମୃତକଙ୍କୁ ଛାଡ଼ିଦେଲେ 1200 ରୁ ଅଧିକ ଲୋକ ଗୁରୁତର ଭାବରେ ଆହତ ମଧ୍ୟ ହୋଇଥିଲେ । ମୃତ୍ୟୁବରଣ କରିଥିବା ଏବଂ ଆଘାତପ୍ରାପ୍ତ ଲୋକଙ୍କୁ କୌଣସି ପ୍ରକାରର ଚିକିତ୍ସା ମଧ୍ୟ ଦିଆଯାଇନଥିଲା । ସେତିକି ଯେପରି ଯଥେଷ୍ଟ ନଥିଲା । ପରବର୍ତ୍ତୀ କିଛିଦିନ ପର୍ଯ୍ୟନ୍ତ ଜେନେରାଲ ଡାୟାର ସାଧାରଣରେ ଲୋକମାନଙ୍କୁ ବେତମାଡ଼ ଦେବାକୁ ଆଦେଶ ଦେଇଥିଲେ ଏବଂ ଅମୃତସରର ରାସ୍ତା ଉପରେ ଲୋକଙ୍କୁ ଗୁରୁଣ୍ଡି ଗୁରୁଣ୍ଡି ଚାଲିବାକୁ ବାଧ୍ୟ କରାଇଥିଲେ ।

କିଛିଦିନ ପରେ ଜବାହରଲାଲ ପଞ୍ଜାବରୁ ଫେରୁଥିବାବେଳେ ଗୋଟିଏ ବିଚିତ୍ର ଘଟଣା ଘଟିଲା । ଦିନେ ରାତି ଗାଡ଼ିରେ ସମସ୍ତେ ଶୋଇପଡ଼ିଥିଲେ । ଗୋଟିଏ ଡ଼ବାରେ ଉପର ସିଟ୍‌ଟି ଖାଲିଥିବା ଦେଖି ଜବାହରଲାଲ ତା'କୁ ଅଧିକାର କରିନେଇଥିଲେ । ସକାଳୁ ଉଠି ସେ ଜାଣିଲେ ଯେ ତାଙ୍କ ଡ଼ବାଟି ପ୍ରକୃତରେ ସୈନ୍ୟ ବିଭାଗର ଅଫିସରଙ୍କ ପାଇଁ ସଂରକ୍ଷିତ ଏବଂ ସେ ଭୁଲ୍‌ରେ ସେଥିରେ ପଶିଆସିଛନ୍ତି । ସେଇ ଡ଼ବାରେ ହଠାତ୍ କେହି ସୁପ୍ତ ଲୋକମାନଙ୍କୁ ଉପେକ୍ଷାକରି ବଡ଼ପାଟିରେ କହିବାକୁ ଲାଗିଲା ଯେ, ସେଦିନ୍ ସମଗ୍ର ଅମୃତସର ତା'ର ଦୟାରେ ଥିଲା । "ଜାଲିଆନାୱାଲାବାଗର ସେଇ ଦୁଃସ୍ଥ ଭାରତୀୟମାନେ ଇଂରେଜମାନଙ୍କର ଶକ୍ତିର ପରିଚୟ ପାଇଯାଇଛନ୍ତି ।" ସେ କହିଚାଲିଥିଲା । ସେଦିନ ସେ ସମଗ୍ର ସହରକୁ ପୋଡ଼ିପାଉଁଶ କରିଦେଇଥାନ୍ତା

ବୋଲି ଚିତ୍କାର କରୁଥିଲା । ପରେ ଜବାହରଲାଲ ଆବିଷ୍କାର କରିଥିଲେ, ସେ ବ୍ୟକ୍ତି ଅନ୍ୟ କେହି ନୁହେଁ, ସେ ଥିଲା ଜେନେରାଲ ଡାୟାର ନିଜେ ।

ଜାଲିଆନାୱାଲାବାଗ୍ ଘଟଣା ନେହେରୁ ପରିବାର ଉପରେ ଗଭୀର ପ୍ରଭାବ ପକାଇଥିଲା । ମୋତିଲାଲ ସବୁ ତ୍ୟାଗ କରି ଜାତୀୟ ଆନ୍ଦୋଳନରେ ସମ୍ପୂର୍ଣ୍ଣ ଝାସ ଦେଲେ ଏବଂ ଜବାହରଲାଲଙ୍କୁ ମଧ ଗାନ୍ଧିଜୀଙ୍କୁ ପ୍ରତ୍ୟକ୍ଷ ସାହାଯ୍ୟ କରିବାର ଇଚ୍ଛାରେ ଆଉ ବାଧା ଦେଇପାରିଲେ ନାହିଁ । 1920 ରେ ଆରମ୍ଭ ହୋଇଥିବା ଅସହଯୋଗ ଆନ୍ଦୋଳନରେ ଜବାହରଲାଲ ଅଂଶଗ୍ରହଣ କଲେ । ରାଜନୀତିରେ ତାଙ୍କର ଯୋଗଦାନ ତାଙ୍କୁ ଭୂମିରୁ କାରଖାନା ଯାଏଁ କାମ କରୁଥିବା ଶ୍ରମିକମାନଙ୍କ ସହିତ ମିଶିବାର ସୁଯୋଗ ଦେଲା । ସେ ପର୍ଯ୍ୟନ୍ତ ଜବାହରଲାଲ ଜାଣିନଥିଲେ, କାରଖାନାରେ ଶ୍ରମିକମାନଙ୍କୁ କିପରି ଶୋଷଣ କରାଯାଉଛି କିମ୍ବା ଭୂମିହୀନ ମୂଲିଆମାନେ କିପରି ଦୁରବସ୍ଥାରେ



କାମ କରୁଛନ୍ତି । ରାଜନୀତିରେ ତାଙ୍କର ପ୍ରବେଶ ଚାଷୀମାନଙ୍କ ସହିତ ମିଶିବାରେ ତାଙ୍କୁ ସାହାଯ୍ୟ କଲା । ଜମିଦାରମାନେ ଶ୍ରମିକମାନଙ୍କୁ କିପରି ଅତ୍ୟାଚାର କରନ୍ତି, ତାହା ସେ ପ୍ରଥମଥର ପାଇଁ ଦେଖିଲେ । ଏଇ ଶ୍ରମିକମାନଙ୍କର ପିଲାମାନେ ଥିଲେ ଭୋକିଲା ଆଉ ରୋଗିଣା ଏବଂ ନାରୀମାନେ କଙ୍କାଳସାର । ଏଇ ଦରିଦ୍ରମାନଙ୍କୁ ଦେଖିଲା ପରେ ତାଙ୍କ ଜୀବନର ଧାରା ମଧ୍ୟ ବଦଳିଗଲା । ସେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, ''ଭାରତର ଏକ ନୂତନ ଚିତ୍ର ମୋ ସମ୍ମୁଖରେ ଉଭାସିତ ହୋଇଗଲା, ତାହା ଥିଲା ନଗ୍ନ, କ୍ଷୁଧାର୍ଥ, ନିଷ୍ପେଷିତ ଏବଂ ଅତ୍ୟନ୍ତ ଶୋଚନୀୟ ।''

ଜବାହରଲାଲ ଏ ଗାଁରୁ ସେ ଗାଁ ବୁଲିବାରେ ଲାଗିଲେ । କେତେବେଳେ ପାଦରେ, କେତେବେଳେ ରେଳରେ, କେବେ ବା ଶଗଡ଼ ଗାଡ଼ିରେ ଆଉ କେତେବେଳେ ପୁଣି ସାଇକେଲରେ । ସେ ଚାଷୀମାନଙ୍କ ସହିତ ମିଶିଲେ, ତାଙ୍କ ସାଙ୍ଗରେ ଏକାଠି ବସି ଖାଇଲେ, ତାଙ୍କ ମାଟିର ଚାଳଘରେ ରହିଲେ, ତାଙ୍କ ସାଙ୍ଗରେ ଘଣ୍ଟା ଘଣ୍ଟା ଧରି ଗପିଲେ, ତାଙ୍କ ସଭାରେ ଭାଷଣ ମଧ୍ୟ ଦେଲେ । ତାଙ୍କ ଲାଜକୁଳା ପ୍ରକୃତି କ୍ରମେ ଦୂର ହୋଇଗଲା । ସାଧାରଣ ସଭାରେ ସେ ଭାଷଣ ଦେବା ଆରମ୍ଭ କଲେ । ''ମୁଁ ସେମାନଙ୍କୁ ଜଣ ଜଣ କରି ଯାହା ଭାବୁଥିଲି, ଯାହା ମୋ ହୃଦୟରେ ଥିଲା, ସବୁକଥା ଶୁଣେଇଲି ।'' ମାଟିର ମଣିଷଙ୍କ ସହିତ ତାଙ୍କର ଯୋଗାଯୋଗ ଦିନକୁ ଦିନ



କମଳା ଓ ଇନ୍ଦିରାଙ୍କ ସାଙ୍ଗରେ

ଅନ୍ତରଙ୍ଗ ହେବାରେ ଲାଗିଲା । ସେ ଗୋଟିଏ ପ୍ରକାରର ନୂତନ ଗର୍ବ ଅନୁଭବ କଲେ । ଏକ ନୂତନ ଲକ୍ଷ୍ୟ ନେଇ ସେ ଆଗକୁ ମାଡ଼ିଚାଲିଲେ । ସେଥିପାଇଁ ତାଙ୍କର ବ୍ୟକ୍ତିଗତ ବ୍ୟାପାର କ୍ରମେ ଅବହେଳିତ ହେଲା । ପରିବାର, ସ୍ତ୍ରୀ, ଏପରିକି ଛୋଟଝିଅ ଇନ୍ଦିରାଙ୍କ କଥା ଭାବିବାକୁ ମଧ୍ୟ ତାଙ୍କର ସମୟ ନଥିଲା । ପୂର୍ବରୁ ସୁଖ ଓ ସମୃଦ୍ଧ ଜୀବନ ତାଙ୍କଠାରୁ ଲକ୍ଷ ଲକ୍ଷ ମାଇଲ ଦୂରେଇଗଲା ।

ମହାତ୍ମା ଗାନ୍ଧୀଙ୍କ ପ୍ରତି ମୋତିଲାଲଙ୍କର ଗଭୀର ଅନୁରାଗ ଯୋଗୁଁ ସେ ଆଇନ ବ୍ୟବସାୟ ତ୍ୟାଗକଲେ ଏବଂ ଷାଠିଏ ବର୍ଷ ବୟସରେ ମଧ୍ୟ ଆପଣାର ଜୀବନଧାରଣ ପ୍ରଣାଳୀକୁ ପରିବର୍ତ୍ତନ



ଭାରତୀୟ ପୋଷାକରେ ନେହେରୁ ପରିବାର

କରିଦେଲେ । ନିଜର ଧନାଢ୍ୟ, ଇଉରୋପୀୟ ଜୀବନଧାରା ବଦଳରେ ସେ ସାଧାରଣ ଭାରତୀୟଙ୍କ ପରି ଜୀବନଯାପନ କରିବାରେ ଲାଗିଲେ ।

ନେହେରୁ ପରିବାରର ଏ ପରିବର୍ତ୍ତନ ସବୁରି ଦୃଷ୍ଟି ଆକର୍ଷଣ କଲା ଏବଂ ଦେଶସାରା ବ୍ୟାପିଗଲା । ତାଙ୍କର ପୋଷାକରେ ପାଶ୍ଚାତ୍ୟ ସୁଟ୍ ଏବଂ ଟାଇ ବଦଳରେ ଭାରତୀୟ ଲୁଗା ଏବଂ ମିଲ୍ ତିଆରି କନା ସ୍ଥାନରେ ହାତବୁଣା ଖଦି ସ୍ଥାନ ଗ୍ରହଣକଲା । ଇଂରାଜୀ ବଦଳରେ ଘରେ ହିନ୍ଦୁସ୍ତାନୀ ଭାଷା ବ୍ୟବହାର ହେଲା । ହିନ୍ଦୁ ଓ ମୁସଲମାନ, ଚାଷୀ ଏବଂ ଜମିଦାର, ଉଚ୍ଚ ଆଉ ନୀଚ ପ୍ରଥମ ଥରପାଇଁ ଭାରତୀୟ ଇତିହାସରେ ଗୋଟିଏ ଲକ୍ଷ୍ୟ ନେଇ ଏକାଠି ହେଲେ, ତାହା ହେଲା ସ୍ୱରାଜ୍ୟ - ଦେଶପାଇଁ ସ୍ୱାଧୀନତା ।

ଭାରତୀୟତାର ଏଇ ପରିବର୍ତ୍ତନରେ ମଧ୍ୟ ଧର୍ମର ଜାଗରଣ ସୃଷ୍ଟିହେଲା । ଜବାହରଲାଲ ଏହାକୁ ଗ୍ରହଣ କରିପାରୁନଥିଲେ । ସେ ଲେଖିଥିଲେ, ''ରାଜନୀତିରେ ମଧ୍ୟ ଧର୍ମର ପ୍ରବେଶ ମୋତେ ବେଳେବେଳେ ଅସ୍ଥିର କରୁଥିଲା । ଉଭୟ ହିନ୍ଦୁ ଓ ମୁସଲମାନଙ୍କ ପକ୍ଷର ଲୋକମାନେ ଏହାକୁ ପ୍ରୋତ୍ସାହିତ କରୁଥିଲେ । ମୋତେ ତାହା ମୋଟେ ଭଲ ଲାଗୁନଥିଲା । ସବୁକଥାରେ ଧର୍ମର ସଂପୃକ୍ତି, ମୁକ୍ତ ଚିନ୍ତାକୁ ବ୍ୟାହତ କରୁଥିଲା । ତଥାପି ଆମ ଆନ୍ଦୋଳନ ଓ ସତ୍ୟାଗ୍ରହର ଯେଉଁ ନୈତିକ ଓ ପାରମ୍ପରିକ ଦିଗଥିଲା, ତାକୁ ମୁଁ ପ୍ରଶଂସା ନକରି ରହିପାରୁନଥିଲି ।



ଜେଲ୍ ଭିତରେ ଜବାହରଲାଲ, 1921

ସ୍ୱାଧୀନତା ଆନ୍ଦୋଳନରେ ପ୍ରତ୍ୟକ୍ଷ ନେତୃତ୍ୱ ନେଇ ଉଭୟ ଜବାହରଲାଲ ଓ ତାଙ୍କ ପିତା ଗିରଫ ହେଲେ ଏବଂ 1921 ଡିସେମ୍ବର 21 ତାରିଖରେ ଅଭିଯୁକ୍ତ ହୋଇ ଛଅମାସ ପାଇଁ କାରାଦଣ୍ଡ ଭୋଗକଲେ । ଜବାହରଲାଲଙ୍କର ଏକମାତ୍ର କନ୍ୟା ଇନ୍ଦିରାଙ୍କୁ ଯେତେବେଳେ ମାତ୍ର ଚାରିବର୍ଷ ହୋଇଥିଲା, ସେ ଅଜାଙ୍କ ସାଙ୍ଗରେ ବିଚାର ଦେଖିବାକୁ ଯାଇଥିଲେ । ମୋତିଲାଲ ତାଙ୍କୁ ସମସ୍ତ ବିଚାର ସମୟତକ କାଖରେ ଧରିଥାନ୍ତି । ଫଳରେ ସେଇ ପିଲାଦିନୁ ତାଙ୍କର ଅଦାଲତ ସମ୍ପର୍କରେ ପ୍ରତ୍ୟକ୍ଷ ଅଭିଜ୍ଞତା ହୋଇଥିଲା । ଜବାହରଲାଲଙ୍କୁ ତିନିମାସ ପରେ ମୁକ୍ତ କରିଦିଆଗଲା । କର୍ତ୍ତୃପକ୍ଷ ସେତେବେଳେ ଅନୁଭବ କରିଥିଲେ ଯେ, ତାଙ୍କୁ ଭୁଲ୍‌ରେ କାରାଦଣ୍ଡ ଦିଆଯାଉଛି । ମୁକ୍ତ ହେବା ସଙ୍ଗେସଙ୍ଗେ ଜବାହରଲାଲ ପୁନଶ୍ଚ ଆପଣାର ରାଜନୈତିକ କାର୍ଯ୍ୟ ଆରମ୍ଭ କରିଦେଲେ ଏବଂ ମାତ୍ର ଛ' ସପ୍ତାହ ପରେ ପୁଣି ଥରେ ଜେଲ୍ ଭିତରକୁ ଫେରିଆସିଲେ ।

ଜବାହରଲାଲ ଜେଲ୍ ଭିତରେ ସବୁବେଳେ ନିଜକୁ କୌଣସି କାର୍ଯ୍ୟରେ ସଂପୃକ୍ତ କରି ରଖୁଥିଲେ । ସେ ସେଠାରେ ସୂତାକାଟି ଶିଖିଲେ । ଜେଲରେ ଥାଇ ମଧ୍ୟ ସେହି କୋଠରୀ ପରିକ୍ରମା କରି ସେ ନିଜର ଦୈନନ୍ଦିନ ବ୍ୟାୟାମ ଜାରି ରଖିଥିଲେ । ବେଳେବେଳେ ଅନ୍ୟ ଜଣେ ସହବନ୍ଦୀ ସାଙ୍ଗରେ ମିଶି ବଳଦ ପରି କୂଅରୁ ପାଣି କାଢୁଥିଲେ । ପଢ଼ିବା କିନ୍ତୁ ଥିଲା ତାଙ୍କର ସମୟ କାଟିବାର ବଡ଼ ଉପାୟ । ଯେତେବେଳେ ତାଙ୍କୁ କାଗଜକଲମ ପାଇଁ ଅନୁମତି ମିଳୁଥିଲା, ସେତେବେଳେ ସେ ଲେଖୁଥିଲେ । ଜେଲରେ ଥାଇ ଜବାହରଲାଲ ତାଙ୍କର ପ୍ରସିଦ୍ଧ ପୁସ୍ତକ ଗୁଡ଼ିକ ଲେଖିଛନ୍ତି । ସେଗୁଡ଼ିକ ହେଲା, ''ଭାରତ ଆବିଷ୍କାର'', ତାଙ୍କ ଆତ୍ମଜୀବନୀ ''ମୋ କାହାଣୀ'' ଏବଂ ବହୁ ସୁନ୍ଦର ଶବ୍ଦରେ ଝିଅ ଇନ୍ଦିରା ପାଖକୁ ଲିଖିତ ପତ୍ର, ଯେଉଁଥିରେକି ସେ ତାଙ୍କୁ ଇତିହାସ ଶିକ୍ଷାଦେବା ସଙ୍ଗେସଙ୍ଗେ ଭାରତର ସ୍ୱାଧୀନତା ସଂଗ୍ରାମର ଜଣେ ସାହସୀ ସୈନିକ ହେବା ପାଇଁ ପରାମର୍ଶ ମଧ୍ୟ ଦେଇଥିଲେ । ପ୍ରତ୍ୟେକ ପତ୍ରରେ ତାଙ୍କର କନ୍ୟାପ୍ରତି ଥିବା ଅତ୍ୟଧିକ ସ୍ନେହ କଲମ ମୂନରେ ପ୍ରକାଶ ପାଇଛି । ପରବର୍ତ୍ତୀ କାଳରେ ଏହି ପତ୍ରଗୁଡ଼ିକ ପୁସ୍ତକାକାରରେ ପ୍ରକାଶ ପାଇଲା ଯାହାର ନାମ 'ବିଶ୍ୱ ଇତିହାସ' । ସେ କାରାଦଣ୍ଡ ଭୋଗ କରୁଥିବା ପ୍ରତ୍ୟେକ ଜେଲରେ ବିଚିତ୍ର ଏବଂ ବିଭିନ୍ନ ପ୍ରକାରର ଅସୁବିଧାମାନ ରହିଥିଲା । ନାଭା ଜେଲ ସମ୍ପର୍କରେ ଜବାହରଲାଲ ଲେଖିଛନ୍ତି, ''ରାତିରେ ଆମେ ଚଟାଣରେ ଶୋଉଥିଲୁ । ହଠାତ୍ ଆତଙ୍କରେ ମୋ ନିଦ ଭାଙ୍ଗିଯାଉଥିଲା, କିନ୍ତୁ ପରେ ଜଣାଯାଇଥିଲା ଯେ ମୂଷା କିମ୍ବା ଚୁଟିଆମୂଷା ମୋ ମୁହଁ ଉପର ଦେଇ ଚାଲିଯାଇଛି ।'' ସେଠାକାର ଅସ୍ୱାସ୍ଥ୍ୟକାର ପରିବେଶରେ ଜବାହରଲାଲଙ୍କୁ ଟାଇଫଏଡ୍ ଜ୍ୱର ହୋଇଯାଇଥିଲା ।

ଜେଲରେ ଥାଇ ଜବାହରଲାଲ ରାତିରେ ତାରକାମାନଙ୍କର ଗତିବିଧି ନିରୀକ୍ଷଣ କରିବା ଆରମ୍ଭ କଲେ ଏବଂ କ୍ରମେ ବିଭିନ୍ନ ତାରକାମଣ୍ଡଳ ଚିହ୍ନିପାରିବାରେ ସକ୍ଷମ ହେଲେ । ଡେ଼ରାଡୁନ ଜେଲରେ ଥାଇ ସେ ହିମାଳୟର ଦୃଶ୍ୟ ଏବଂ ବିଭିନ୍ନ ଋତୁ ପରିବର୍ତ୍ତନକୁ ଦେଖି ଉଲ୍ଲସିତ ହୋଇପଡୁଥିଲେ । ସେ ଗୋଟିଏ ଗୁଣ୍ଡୁଚିମୂଷା କଥା ଲେଖିଛନ୍ତି ଯିଏ ତାଙ୍କ ସହିତ ଏତେ ପରିଚିତ ହୋଇଯାଇଥିଲା ଯେ, ତାଙ୍କୁ ଗଛ ଭାବି ତାଙ୍କ ଗୋଡ଼ ଉପରେ ଚଢ଼ିଯାଇଥିଲା ଏବଂ ସେଠି



ନୈନୀ ଜେଲ୍‌ରେ ଜବାହରଲାଲଙ୍କ କାରା କୋଠରୀ

ବସିଯାଉଥିଲା । ଗୋଟିଏ ଶୁଆ ଦମ୍ପତିଙ୍କ ପ୍ରତି ମଧ୍ୟ ସେ ଆସକ୍ତ ହୋଇପଡ଼ିଥିଲେ ଏବଂ ପ୍ରତିଦିନ ସକାଳେ ଏବଂ ସନ୍ଧ୍ୟାରେ ସେମାନଙ୍କୁ ଖୁଆଉଥିଲେ । ତାହାଛଡ଼ା ସେଠାରେ ଥିବା ମାଙ୍କଡ଼ ଦଳଟିଏ ତାଙ୍କୁ ଖୁବ୍ ଆନନ୍ଦ ଦେଉଥିଲେ । ସେ ଗୋଟିଏ ରୋଗାକ୍ରାନ୍ତ କୁକୁରର ସେବା ମଧ୍ୟ କରୁଥିଲେ । ଆକାଶରେ ବାଦଲଙ୍କୁ ବି ସେ ନିଜର ଅନ୍ତରଙ୍ଗ ବୋଲି ଭାବୁଥିଲେ । ସେ ଆତ୍ମଜୀବନୀରେ ଲେଖିଛନ୍ତି, ''ବେଳ ଅବେଳରେ ଖଣ୍ଡେ ବିକ୍ଷିପ୍ତ ବାଦଲ ମୋ ପାଖକୁ ଚାଲିଆସନ୍ତା ଆଉ ବିଭିନ୍ନ ଖୋଲାସ୍ଥାନ ଦେଇ ତା'ର ହାତଗୁଡ଼ିକ ବଢ଼େଇ ଦିଅନ୍ତା ପୁଣି ସେ ଯାଗାରେ ଶୀତଳ କୁହୁଡ଼ି ଝାଡ଼ିଦିଅନ୍ତା ।''

ଜବାହରଲାଲଙ୍କୁ ନଅ ଥର ଜେଲ୍ ଯିବାକୁ ପଡ଼ିଥିଲା ଏବଂ ସେ ପ୍ରାୟ ଦଶବର୍ଷ ଜେଲ୍ ଭିତରେ କଟାଇଥିଲେ । ଘରୁ ଏଇ ଦୀର୍ଘ ଅନୁପସ୍ଥିତ ତାଙ୍କ ପରିବାର ପ୍ରତି ସବୁଠାରୁ ବଡ଼ ଚାପ ବୋଲି ସେ ଜାଣିଥିଲେ, ''ପ୍ରକୃତ ବୋଝ ମୋର ନଥିଲା, ଏହା ପ୍ରାୟତଃ ନାରୀମାନଙ୍କୁ ସମ୍ଭାଳିବାକୁ ପଡୁଥିଲା । ଏହା ସଚରାଚର ପଡ଼ିଥାଏ ମୋର ଅସୁସ୍ଥ ମାତା, ମୋର ପତ୍ନୀ ଏବଂ ମୋର ଭଉଣୀଙ୍କୁ ।''



ନୈନୀ କେନ୍ଦ୍ରୀୟ ଜେଲରେ

ନିଜର କାରାଦଣ୍ଡ ସମ୍ପର୍କରେ ଜବାହରଲାଲ ଲେଖିଛନ୍ତି, ''ଜଣେ ଜେଲରେ ଅନେକ ପଦାର୍ଥ ହରାଇଥାଏ । କିନ୍ତୁ ସେଥିମଧ୍ୟରୁ ସବୁଠାରୁ ବଡ଼ ଅଭାବ ହେଲା, ବୋଧହୁଏ ''ନାରୀଙ୍କର ସ୍ୱର ଏବଂ ଶିଶୁ ହାସ୍ୟରୋଳ ।'' ତାଙ୍କ ପାଇଁ କାରାଜୀବନର ଦୀର୍ଘସ୍ଥାୟୀ କ୍ଷତି ହେଲା, ରାତ୍ରି ଅଶ୍ୱସ୍ତି ଏବଂ ଅଶାନ୍ତ ନିଦ୍ରା ।

1925 ମସିହା ଶରତକାଳରେ କମଳା ଗୁରୁତର ଭାବରେ ଅସୁସ୍ଥ ହୋଇପଡ଼ିଲେ । ଚିକିତ୍ସା ପାଇଁ ତାଙ୍କୁ ସୁଇଜରଲାଣ୍ଡ ନେବା ଜରୁରୀ ହୋଇପଡ଼ିଲା । ଜବାହରଲାଲଙ୍କୁ ତାଙ୍କ ସାଙ୍ଗରେ ଯିବାକୁ ପଡ଼ିଲା । ସେଠାରେ ସେ ଇଂରେଜ ସରକାରଙ୍କ ଦ୍ୱାରା ନିର୍ବାସିତ ବହୁ ଭାରତୀୟଙ୍କ ସହିତ ସାକ୍ଷାତ କଲେ । ସେମାନଙ୍କୁ ଆପଣାର ମାତୃଭୂମି ବାରଣ କରାଯାଇଥିଲା । ତା'ପରର ଦୁଇବର୍ଷରେ ସେ ବିଶ୍ୱର ସମସ୍ୟାଗୁଡ଼ିକ ପ୍ରତି ପୁଣିଥରେ ଆଗ୍ରହୀ ହୋଇପଡ଼ିଲେ । ରାଜନୀତି ଏବଂ ସାମ୍ପ୍ରତିକ ଘଟଣାବଳୀ ଛଡ଼ା ସଂସ୍କୃତି ଓ ବିଜ୍ଞାନ ସମ୍ପର୍କରେ ମଧ୍ୟ ସେ ଗଭୀର ଅଧ୍ୟୟନ କଲେ ।

ଭାରତକୁ ତାଙ୍କର ପ୍ରତ୍ୟାଗମନ ଯେତିକି ସୁଖକର ହେବା କଥା, ତାହା ହୋଇପାରିନଥିଲା, କାରଣ ସ୍ୱାଧୀନତା ପାଇଁ ଶାନ୍ତିପୂର୍ଣ୍ଣ ସଂଗ୍ରାମ ଯେତେବେଳେ ପୂର୍ଣ୍ଣ ଭାବରେ ଚାଲିଥାଏ, ସେତିକିବେଳେ ସେ ଫେରିଲେ । ଆନ୍ଦୋଳନକାରୀମାନେ ସାଧାରଣ ରାସ୍ତାରେ ଗୋଟିଏ



ଇଉରୋପରେ-1927

ଶୋଭାଯାତ୍ରାରେ ଯାଉଥିଲାବେଳେ ହଠାତ୍ ପୋଲିସ୍‌ଦଳ କୌଣସି କାରଣରୁ ବାହାରିଆସି ଶୋଭାଯାତ୍ରା ଉପରେ ବର୍ଷିଗଲେ । କେତେଜଣ ସ୍ୱେଚ୍ଛାସେବୀ କୌଣସି ପ୍ରକାରେ ଖସିଯାଇ ନିକଟସ୍ଥ ଦୋକାନମାନଙ୍କରେ ଲୁଚିଗଲେ ଏବଂ ଆଘାତରୁ ରକ୍ଷା ପାଇଗଲେ । ଜବାହରଲାଲ କିନ୍ତୁ ବିପଦ ମୁଖରୁ ଲୁଚି ପଳାଇଯିବା ପରି ଭୀରୁ ନଥିଲେ । ସେଥିପାଇଁ ସେ ଏକାକୀ ଶସ୍ତ୍ରଧାରୀ ହିଂସ୍ର ପୋଲିସ ଘେର ମଧ୍ୟରେ ରାସ୍ତା ମଝିରେ ପଡ଼ିଗଲେ । ସେମାନେ ତାଙ୍କୁ ମୁଣ୍ଡ ଓ କାନ୍ଧରେ ଭୀଷଣ ଭାବରେ ଆଘାତ କଲେ । ଜବାହରଲାଲ ବିନାବାଧାରେ ସ୍ଥିର ହୋଇ ଏ ଆକ୍ରମଣକୁ ସହିଗଲେ ।

ପରଦିନ ସେହିପରି ଜବାହରଲାଲ ଆଉ ଗୋଟିଏ ଶାନ୍ତ ବିକ୍ଷୋଭକାରୀଙ୍କ ଶୋଭାଯାତ୍ରା ନେଇଯାଉଥିବାବେଳେ ଅସ୍ତ୍ରଧାରୀ ପୋଲିସ ପୁଣି ତାଙ୍କ ଉପରେ ଝାମ୍ପି ପଡ଼ିଲେ ଏବଂ ବିକ୍ଷୋଭକାରୀଙ୍କୁ ବନ୍ଧୁକରେ ପ୍ରହାର କଲେ । ରାଗରେ ଯଦିଓ ସେ ଅଜ୍ଞାନ ହୋଇପଡ଼ିଥିଲେ, ତଥାପି ପୋଲିସକୁ ପ୍ରତ୍ୟାକ୍ରମଣ କଲେନାହିଁ । ନିଜର ପ୍ରତିକ୍ରିୟା ପ୍ରକାଶ କରି ସେ କହିଛନ୍ତି, ''ସର୍ବଦା ମୁଁ ଶାରୀରିକ ସାହସକୁ ପ୍ରଶଂସା କରିଆସିଛି । ଉତ୍ତମ କାର୍ଯ୍ୟରେ ଶାରୀରିକ କ୍ଲେଶ ସହିବାର ଶକ୍ତି, ଏପରିକି ମୃତ୍ୟୁ ସମୟରେ ମଧ୍ୟ ଏହା ମୁଁ କାମନା କରିଆସିଛି ।'' ସେ ଏ ଘଟଣାକୁ ବେଶ ଲଘୁଭାବରେ ବର୍ଣ୍ଣନା କରିଛନ୍ତି, ''ମୋର ଶାରୀରିକ ଶକ୍ତି ସମ୍ପର୍କରେ ମୁଁ ପୁଣିଥରେ ସଚେତନ ହୋଇପଡ଼ିଲି ଏବଂ ମୋର ସହିବାର ଶକ୍ତି ପୁଣିଥରେ ପରୀକ୍ଷିତ ହୋଇଗଲା ।''

ତା'ପରେ 1930 ରେ ଗାନ୍ଧିଜୀଙ୍କ ଡ଼ାକରା ଆସିଲା ''ଲବଣ ଆଇନ'' ଭାଙ୍ଗିବାକୁ, ସମୁଦ୍ର



ସ୍ୱରୂପାରାଣୀ ଓ କମଳା ଆନନ୍ଦ ଭବନରେ ଲୁଣ ରାନ୍ଧୁଛନ୍ତି

ଆଡ଼କୁ ଦାଣ୍ଡିଯାତ୍ରା ପାଇଁ । ଏହା ସମଗ୍ର ଦେଶକୁ ଉତ୍ତେଜିତ କରିଦେଲା । ଉଭୟ କମଳା ଓ କୃଷ୍ଣା, ଜବାହରଙ୍କର ପତ୍ନୀ ଓ ଭଗ୍ନୀ, ଏ ସ୍ୱେଚ୍ଛାସେବୀଙ୍କ ସାଙ୍ଗରେ ଯୋଗଦେଲେ ଏବଂ କାର୍ଯ୍ୟରେ ପୁରୁଷୋଚିତ ବ୍ୟବହାର ଦେଖାଇଲେ ।''

ବିଦେଶୀ ଲୁଗା ବିକ୍ରୟ ହେଉଥିବା ଦୋକାନମାନଙ୍କରୁ ଲୁଗା ସଂଗ୍ରହ କରିବାରେ ସେମାନେ ସକ୍ରିୟ ହୋଇପଡ଼ିଲେ । ଏପରିକି ଜବାହରଙ୍କର ବୟସ୍କା ମାତା ମଧ ଉତପ୍ତ ଗ୍ରୀଷ୍ମର ସୂର୍ଯ୍ୟତାପରେ ଘଣ୍ଟା ଘଣ୍ଟା ଠିଆ ହୋଇ ବିଦେଶୀ ପଦାର୍ଥ ନ କିଣିବା ପାଇଁ ଲୋକଙ୍କୁ ବାରମ୍ବାର ବୁଝେଇବାରେ ଲାଗିଲେ । ନିଜର ଆତ୍ମଜୀବନୀରେ ସେ ଲେଖିଛନ୍ତି-



କମଳା ଏବଂ କୃଷ୍ଣା-ଆଇନ ଅମାନ୍ୟ ଆନ୍ଦୋଳନରେ ସ୍ୱେଚ୍ଛାସେବୀ ଭାବରେ-1930

''ସେତେବେଳେ ଅନେକ ବିଚିତ୍ର ଘଟଣା ଘଟିଛି । କିନ୍ତୁ ଜାତୀୟ ସଂଗ୍ରାମରେ ନାରୀମାନଙ୍କର ଯୋଗଦାନ ନିଶ୍ଚିତ ଭାବରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଘରକୋଣରୁ ବହୁସଂଖ୍ୟାରେ ଆସି ଯଦିଓ ସାଧାରଣ କାର୍ଯ୍ୟରେ ସେମାନେ ଅନଭିଜ୍ଞ ଥିଲେ, ତଥାପି ଏ ସଂଘର୍ଷ ଭିତରେ ଝାସଦେଇଥିଲେ । .......... କେବଳ ନାରୀମାନଙ୍କୁ ନେଇ ଶୋଭାଯାତ୍ରାମାନ ସହରମାନଙ୍କରେ ବାହାରିବାକୁ ଲାଗିଲା । ସାଧାରଣତଃ ନାରୀମାନଙ୍କ ପ୍ରକୃତି ପୁରୁଷମାନଙ୍କ ଅପେକ୍ଷା ଦୃଢ଼ ।''

ଯେତେବେଳେ କମଳାଙ୍କୁ ଗିରଫ କରିନିଆଗଲା, ତାଙ୍କର ଦେହ ଅଧିକ ଖରାପ ହେବାର ଆଶଙ୍କା କରି ଜବାହରଲାଲ ଯଦିଓ ଚିନ୍ତିତ ହୋଇପଡ଼ିଥିଲେ, ତଥାପି ତାଙ୍କପାଇଁ ସେ ଗର୍ବ ମଧ୍ୟ ଅନୁଭବ କରିଥିଲେ । କମଳାଙ୍କ ବିଷୟରେ ସେ ଲେଖିଥିଲେ, ''କମଳା ଭାବୁଥିଲେ, ପୁରୁଷର ଅତ୍ୟାଚାର ବିରୁଦ୍ଧରେ ନାରୀ ଅଧିକାରର ସେ ଜଣେ ଦୃଢ଼ ସମର୍ଥକ ଏବଂ ସର୍ବଦା ଯୁକ୍ତି କରୁଥିଲେ ଯେ ନାରୀ ପୁରୁଷମାନଙ୍କ ନିକଟରେ ମୁଣ୍ଡ ନୁଆଁଇବା ଉଚିତ ନୁହେଁ ।

ଜବାହରଲାଲଙ୍କର ବିଶ୍ୱାସ ଥିଲା ଯେ, ଦେଶର ଅଗ୍ରଗତି ସମ୍ଭବ ହେବ ଯଦି ନାରୀମାନେ ଶିକ୍ଷିତା ଓ ସ୍ୱାଧୀନ ହୁଅନ୍ତି । ଭାରତୀୟ ନାରୀମାନଙ୍କର କଷ୍ଟଭୋଗର କାହାଣୀକୁ ସେ ବେଶ୍ ବିହ୍ୱଳିତ



କମଳା



ଅସୁସ୍ଥ ମୋତିଲାଲ



ଜବାହରଲାଲଙ୍କର ମାତାଙ୍କୁ ପ୍ରବୋଧନା

ସ୍ୱରରେ ପ୍ରକାଶ କରିଥିଲେ, ''ପୁରୁଷ ଆପଣାର ସୁବିଧାକୁ ଦୃଷ୍ଟିରେ ରଖି ହିଁ ସମାଜର ବହୁ ଅତ୍ୟାଚାର ଓ ପ୍ରଥାମାନ ନାରୀ ବିରୁଦ୍ଧରେ ପ୍ରଚଳନ କରିଛି ।''

1931 ଜାନୁଆରୀ ମାସରେ ଜବାହରଲାଲଙ୍କ ପିତା ଗୁରୁତର ଭାବରେ ଅସୁସ୍ଥ ହୋଇପଡ଼ିଲେ । ସେତେବେଳେ ସେ ଜେଲରେ ଥିଲେ । ମୋତିଲାଲଙ୍କ ପାଖରେ ରହିବା ପାଇଁ ତାଙ୍କୁ ଛାଡ଼ିଦିଆଗଲା । ଅଳ୍ପଦିନପରେ କିନ୍ତୁ ମୋତିଲାଲ ଇହଧାମ ତ୍ୟାଗ କଲେ । ଅନେକ ଦିନ ପର୍ଯ୍ୟନ୍ତ ଜବାହରଲାଲ କ୍ଷୁଧା, ତୃଷ୍ଣା ଏବଂ ନିଦ୍ରା ସବୁ ଭୁଲିଗଲେ । ପିତାଙ୍କର ବିୟୋଗ ତାଙ୍କ ପାଇଁ ଏକ ଅପୂରଣୀୟ କ୍ଷତି ଥିଲା । ତାଙ୍କୁ ଉପଦେଶ ଦେବାପାଇଁ ଆଉ କେହି ରହିଲେ ନାହିଁ ଭାବି ସେ ଖୁବ୍ ବିବ୍ରତ ହୋଇପଡୁଥିଲେ ।

ସ୍ୱାମୀଙ୍କର ମୃତ୍ୟୁ ଏବଂ ଏକମାତ୍ର ସନ୍ତାନର ଜେଲ ପ୍ରତ୍ୟାବର୍ତ୍ତନ ସତ୍ତ୍ୱେ ସ୍ୱରୂପାରାଣୀ ସ୍ୱାଧୀନତା ଆନ୍ଦୋଳନର ଅଗ୍ରଭାଗରେ ରହିବା ପାଇଁ କୁଣ୍ଠାବୋଧ କରିନଥିଲେ । ଥରେ ଆନ୍ଦୋଳନର

ନେତୃତ୍ୱ ନେବା ସମୟରେ ତାଙ୍କୁ ପୋଲିସ ଲାଠିମାଡ଼ ମଧ୍ୟ ଖାଇବାକୁ ପଡ଼ିଥିଲା । ସେ ପଡ଼ିଯାଇଥିଲେ ଏବଂ ସଂଜ୍ଞାହୀନା ହେବା ପର୍ଯ୍ୟନ୍ତ ଖୁବ୍ ମାଡ଼ ଖାଇଥିଲେ । ତାଙ୍କର ମୁଣ୍ଡଫାଟି ରକ୍ତର ଧାର ବୋହିଚାଲିଥିଲା । ଘରକୁ ଯିବା ପର୍ଯ୍ୟନ୍ତ ସେ ସେହିପରି ରାସ୍ତାରେ ପଡ଼ିରହିଥିଲେ । ଏ ଘଟଣା ସମ୍ପର୍କରେ ସେ ପୁତ୍ର ପାଖକୁ ଲେଖିଥିଲେ, ''ବୀରପୁତ୍ରର ମାତା ମଧ୍ୟ ସେହିପରି ବୀରା । ସିଏତ କେବଳ ଲାଠିଥିଲା-ବନ୍ଧୁକ ହୋଇଥିଲେ ମଧ୍ୟ ମୁଁ ମୋର ଛାତି ଦେଖାଇ ଦେଇଥାନ୍ତି ।'' ଯଦିଓ ତାଙ୍କର ସମସ୍ତ କ୍ଷତ ଶୁଖିଯାଇଥିଲା ଏବଂ ସେ ଆରୋଗ୍ୟ ଲାଭ କରିଥିଲେ, ତଥାପି ଏ ବୃଦ୍ଧ ବୟସରେ ଗୁରୁତର ଆଘାତ ଫଳରେ ତାଙ୍କ ଶରୀରରେ ବିଭିନ୍ନ ପ୍ରକାରର ଜଟିଳତା ଦେଖାଦେବା ସଙ୍ଗେ ସଙ୍ଗେ ଶରୀର ପ୍ରାୟତଃ ଅସୁସ୍ଥ ରହୁଥିଲା । ସେଥିପାଇଁ ତାଙ୍କର ପରିତାପ ନଥିଲା । ଜବାହରଲାଲ ଲେଖିଥିଲେ ଯେ, ''ଭାରତର ସ୍ୱାଧୀନତା ପାଇଁ ବେତ ଓ ଲାଠିମାଡ଼ ଖାଇବାର ସୌଭାଗ୍ୟ ତାଙ୍କର ଜୁଟୁଥିବାରୁ ସେ ନିଜକୁ ଗୌରବାନ୍ୱିତ ଏବଂ ଆନନ୍ଦିତ ଅନୁଭବ କରୁଥିଲେ ।'' ପରେ ସେ ଜେଲଦଣ୍ଡ ଭୋଗକରିଥିଲେ ।

ଦୁଃଖ ଯେତେବେଳେ ଆସେ, ତା'ର ସାଙ୍ଗସାଥୀଙ୍କୁ ସାଙ୍ଗରେ ଧରି ଆସେ । କମଳାଙ୍କ ଅବସ୍ଥା ଦିନକୁ ଦିନ ଖରାପ ହେବାରେ ଲାଗିଲା । ସେ ଜାଣିଥିଲେ, ତାଙ୍କର ଶେଷ ସମୟ



କମଳା ଯେତେବେଳେ ଅସୁସ୍ଥ

ଆସିଗଲାଣି । ତଥାପି ଜବାହରଲାଲଙ୍କୁ ବନ୍ଦୀଶାଳାରୁ ଆସି ତାଙ୍କ ପାଖେ ରହିବା ପାଇଁ ସେ ଉତ୍ସାହିତ କରିନଥିଲେ । 1936 ମସିହା ଫେବୃଆରୀ ମାସରେ ସେ ଚିରଦିନ ପାଇଁ ଆଖି ବୁଜିଦେଲେ । ଜବାହରଲାଲ ଏକାକୀ ହୋଇଗଲେ, କମଳାଙ୍କ ବିନା ଜୀବନ ବିତାଇବା ତାଙ୍କ ପାଇଁ ଦୁର୍ବିସହ ହୋଇପଡ଼ିଲା । ''ଆମର ସମସ୍ତ ଉଜ୍ଜ୍ୱଳ ଭବିଷ୍ୟତ ଧୂଳିସାତ୍ ହୋଇଯାଇଥିଲା ।'' ଏହା ଥିଲା ତାଙ୍କର ପ୍ରତିକ୍ରିୟା । ଜାନୁଆରୀ 1938ରେ ତାଙ୍କ ମାଆଙ୍କର ତିରୋଧାନ ଘଟିଲା । ତା'ପରେ ସେ ଲେଖିଥିଲେ, ''ମୁଁ ଘରକୁ ଫେରିବି...... ସେଇ ନିଃସଙ୍ଗ ଘରେ ଏକୁଟିଆ ବସିବି । ନିଜ ଭିତରେ ହଜିଯିବି ।''

1939ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ଭାରତର ସମସ୍ତ ଜାତୀୟ ନେତା ନାଜିବାଦ ଓ ଫାସିବାଦ ବିରୁଦ୍ଧରେ ଥିଲେ ମଧ୍ୟ ସେମାନଙ୍କୁ ନପଚାରି କିମ୍ବା ଭାରତର ସ୍ୱାଧୀନତା ସମ୍ପର୍କରେ କୌଣସି ଘୋଷଣା ନକରି, ଇଂରେଜ ସରକାର ଯେପରି ଭାରତକୁ ଯୁଦ୍ଧରେ ଜଡ଼ିତ କରାଇଦେଲେ, ତାହାକୁ ଗ୍ରହଣ କରିହେଲାନାହିଁ । ଭାରତ ତା'ର ସମସ୍ତ ଧୈର୍ଯ୍ୟ ହରାଇ ସାରିଥିଲା । 1942ର ଗ୍ରୀଷ୍ମ ଋତୁରେ ଗାନ୍ଧିଜୀ ଇଂରେଜ ସରକାରକୁ ''ଭାରତଛାଡ଼'' ଡ଼ାକ ଦେଲେ । ପୁଣିଥରେ



ଭାରତ ଛାଡ଼ ପ୍ରସ୍ତାବ ସମୟରେ ଗାନ୍ଧିଜୀଙ୍କ ସହିତ

ଗାନ୍ଧିଜୀ ଓ ଜବାହରଲାଲଙ୍କ ସମେତ ସମସ୍ତ ଜାତୀୟ ନେତାମାନଙ୍କୁ ସରକାର ଗିରଫ କରିନେଲେ । ଅଧିକାଂଶ ନେତାଙ୍କୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମାପ୍ତ ହେଲାପର୍ଯ୍ୟନ୍ତ ବନ୍ଦୀ ଜୀବନ କଟାଇବାକୁ ପଡ଼ିଲା । ଯୁଦ୍ଧରେ ନାଜି ଜର୍ମାନୀ, ଫାସିଷ୍ଟ ଇଟାଲୀ ଓ ଜାପାନ ବିରୁଦ୍ଧରେ ଇଂଲଣ୍ଡ, ଫ୍ରାନ୍ସ, ରୁଷିଆ ଓ ଆମେରିକାର ମିଳିତ ଶକ୍ତି 'ମିତ୍ରଶକ୍ତି'ର ବିଜୟ ଘଟିଥିଲା ।

ଜେଲରୁ ମୁକ୍ତି ପାଇଲା ପରେ ନେତାମାନେ ଇଂରେଜ ସରକାରଙ୍କ ସହିତ ଭାରତର ଶାସନଭାର ପରିବର୍ତ୍ତନ ସମ୍ପର୍କରେ ଆଲୋଚନା ଚଳାଇଲେ । ଦୁର୍ଭାଗ୍ୟବଶତଃ କେତେକ ମୁସଲିମ୍ ନେତା ଜିନ୍ନାଙ୍କ ନେତୃତ୍ୱରେ ମୁସଲମାନମାନଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ପାକିସ୍ଥାନ ପାଇଁ ଆପଣାର ଦାବି ଘୋଷଣା କଲେ । ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ସମ୍ପର୍କ କ୍ରମେ ତିକ୍ତ ହେବାରେ ଲାଗିଲା । ଅଧିକାଂଶ ସହରରେ ଦଙ୍ଗା ଆରମ୍ଭ ହୋଇଗଲା । ଜବାହରଲାଲଙ୍କ ପାଇଁ ଏହା ତୀବ୍ର ଶାରୀରିକ ଓ ମାନସିକ ଯନ୍ତ୍ରଣାର କାରଣ ହୋଇପଡ଼ିଲା । ସେ ଲେଖିଥିଲେ, ''ଆରାଧନା ଓ ଉଦାରତା ଏକତ୍ର ରହିପାରନ୍ତି ନାହିଁ ।'' ଏଥିପାଇଁ ସେ ଭାରତର ପ୍ରଚଳିତ ଧର୍ମବ୍ୟବସ୍ଥାକୁ ଦୋଷାରୋପ କରିଥିଲେ । ସେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି, ''ଅନ୍ୟର ମତ ଏବଂ ବିଶ୍ୱାସ ପ୍ରତି ଅସହିଷ୍ଣୁତା ପ୍ରଦର୍ଶନ ସଙ୍କୁଚିତ ମନର ପରିଚାୟକ ............ ଧାର୍ମିକ ମନୋଭାବ ମନୁଷ୍ୟର ନୈତିକ ଓ ଆଧ୍ୟାତ୍ମିକ ବିକାଶରେ କେବଳ ଯେ ସାହାଯ୍ୟ କରେନାହିଁ, ତା' ନୁହେଁ, ବାଧା ସୃଷ୍ଟି ମଧ୍ୟ କରିଥାଏ । ହିନ୍ଦୁ, ମୁସଲମାନ, ଶିଖ ଏବଂ ଅନ୍ୟମାନେ ନିଜ ନିଜର ଧର୍ମବିଶ୍ୱାସକୁ ନେଇ ଗର୍ବ କରୁଛନ୍ତି ଏବଂ ମୁଣ୍ଡର ବିନିମୟରେ ତାହାର ସତ୍ୟତା ପ୍ରତିପାଦନ କରୁଛନ୍ତି ।'' ଏଥିରେ ସେ ଭୀଷଣ କ୍ରୋଧ ପ୍ରକାଶ କରିଥିଲେ ଏବଂ ଭୟଭୀତ ମଧ୍ୟ ହୋଇପଡ଼ିଥିଲେ ।

ଗାନ୍ଧିଜୀ ଏବଂ ଜବାହରଲାଲଙ୍କର ସମସ୍ତ ଚେଷ୍ଟା ସତ୍ତ୍ୱେ ହିନ୍ଦୁ ମୁସଲମାନ ଦଙ୍ଗା ସହର ପରେ ସହରମାନଙ୍କରେ ତେଜି ଉଠିଲା । ଲୁଟ୍‌ପାଟ, ପୋଡ଼ାଜଳା, ହଣାକଟା ପ୍ରତିଦିନର ସାଧାରଣ ଘଟଣାରେ ପରିଣତ ହେଲା । ପ୍ରତିଶୋଧ, କେବଳ ପ୍ରତିଶୋଧର ନିଆଁ ସବୁରି ପାଖରେ ଜଳିବାରେ ଲାଗିଲା । ଭାରତରେ ଏହା ପୂର୍ବରୁ ଏପରି ଭୟାବହ ପରିସ୍ଥିତି କେବେ ଦେଖାନଥିଲା । ଅନେକ କିଛି ତ ନଷ୍ଟ ତ ହେଲା । କିନ୍ତୁ ଏଥିରେ ସବୁଠାରୁ ବଡ଼ କ୍ଷତି ହେଲା ମଣିଷର ପରସ୍ପର ପ୍ରତି ଥିବା ବିଶ୍ୱାସ, ଯାହା ଏପର୍ଯ୍ୟନ୍ତ ଥିଲା ।

ଭାରତ ଦୁଇଭାଗ ହେଲା । ଭାରତର ଉତ୍ତର-ପଶ୍ଚିମ ଏବଂ ପୂର୍ବଭାଗକୁ ନେଇ ପାକିସ୍ତାନ ଅଲଗା ହୋଇଗଲା । ଲକ୍ଷ-ଲକ୍ଷ ଲୋକ ନିଜର ଘରଦ୍ୱାର, ସମ୍ପତ୍ତିବାଡ଼ି ଛାଡ଼ି ଶହ-ଶହ କିଲୋମିଟର ଦୂରରେ ଥିବା ଅଜଣା ସ୍ଥାନକୁ ଏକ ଅନିଶ୍ଚିତ ଭବିଷ୍ୟତ ନେଇ ବାହାରିଯିବାକୁ ବାଧ୍ୟ ହେଲେ । ଶତାବ୍ଦୀ, ଶତାବ୍ଦୀ ଧରି ଆପଣାର ବୋଲି ଗ୍ରହଣ କରିନେଇଥିବା ଦେଶ, ମାତ୍ର କେଇଟି ମୁହୂର୍ତ୍ତରେ ପର ହୋଇଗଲା । ପ୍ରାୟ କୋଟିଏ ଲୋକ ବାସହୀନ ହୋଇଗଲେ ଏବଂ ପାଞ୍ଚଲକ୍ଷରୁ ଅଧିକ ପ୍ରାଣବଳୀ ଦେଲେ । ଦୁଇଟି ନୂତନ ଦେଶ, ପାକିସ୍ତାନ ଏବଂ ଭାରତ ଯଥାକ୍ରମେ ଅଗଷ୍ଟ 14 ଏବଂ 15, 1947ରେ ଜନ୍ମ ନେଲେ ।



ଦେଶ ବିଭାଜନ ପାଇଁ ଭୋଟ



ଗାନ୍ଧିଜୀ, ଜବାହରଲାଲ ଏବଂ ସାମ୍ପ୍ରଦାୟିକତାରେ ଶିକାର ମଣିଷ



1947, ଅଗଷ୍ଟ 14 ଓ 15 ତାରିଖ ମଧ୍ୟରାତ୍ରିରେ ଜବାହରଲାଲ ଦେଶ ଉଦ୍ଦେଶ୍ୟରେ ତାଙ୍କର ଭାଷଣ ଦେଲେ । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଘଟିଯାଇଥିବା ବହୁ ଅଶୋଭନୀୟ ଘଟଣା ପାଇଁ ସେ ଆଦୌ ଖୁସି ନଥିଲେ । ତାଙ୍କ ମୁହଁରୁ କିନ୍ତୁ ସେଇ ଆବେଗପୂର୍ଣ୍ଣ ଶବ୍ଦ ଶୁଣିବା ପାଇଁ ପ୍ରତ୍ୟେକ ଭାରତୀୟ ଅପେକ୍ଷାକରି ରହିଥିଲେ ।

"ବହୁବର୍ଷ ପୂର୍ବେ ଭାଗ୍ୟ ସହିତ ଆମେ ଏକ ବୁଝାମଣା କରିଥିଲୁ । ସମୟ ଆସିଛି, ଆଜି ସେ ଶପଥକୁ ପୂରଣ କରିବା, ସମ୍ପୂର୍ଣ୍ଣ ଭାବରେ ନୁହେଁ କିମ୍ବା ଯେତେ ସମ୍ଭବ ତା ମଧ୍ୟ ନୁହେଁ, କିନ୍ତୁ ବହୁଅଂଶରେ । ଅର୍ଦ୍ଧରାତ୍ରିର ଘଣ୍ଟା ଯେତେବେଳେ ବାଜିଉଠିବ, ସମଗ୍ର ପୃଥିବୀ ସୁପ୍ତ ଥିବ, ସେତିକିବେଳେ ଭାରତ ସହସା ଜାଗିଉଠି ପାଇବ ତା'ର ଜୀବନ ଏବଂ ସ୍ୱାଧୀନତା । ଏପରି ଗୋଟିଏ ମୁହୂର୍ତ୍ତ ଆସିଥାଏ, ଯାହାକି ଇତିହାସରେ ଖୁବ୍ କମ୍ ଥର ଆସେ । ଯେତେବେଳେ ଆମେ ପ୍ରାଚୀନରୁ ବାହାରି ନୂତନରେ ପାଦଦେଉ, ସେତେବେଳେ ଗୋଟିଏ ଦେଶର ଆତ୍ମା ବହୁଦିନ ଚାପିହୋଇ ରହିଲା ପରେ ମୁକ୍ତିର ସୁଯୋଗ ପାଇଥାଏ । ଏବେ ସେହି ପବିତ୍ର ମୁହୂର୍ତ୍ତ ଆସିଛି, ଯେତେବେଳେ ଆମେ ଭାରତ ଓ ତା'ର ଲୋକଙ୍କର ସେବାପାଇଁ ଏବଂ ତା'ଠାରୁ ବଳି ସମଗ୍ର ମାନବତାର ହିତ ପାଇଁ ଉତ୍ସର୍ଗର ଶପଥ ନେବା ।"

ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଭାବରେ ଶପଥ ଗ୍ରହଣ, ଅଗଷ୍ଟ 15, 1947

ଏକଶହ ପଚାଶ ବର୍ଷରୁ ଅଧିକ ସମୟର ବିଦେଶୀ ଶାସନର ଅବସାନ ଘଟିଲା । ଜବାହରଲାଲ ନେହେରୁ ହେଲେ ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ । ଉଲ୍ଲାସ ପାଇଁ କିନ୍ତୁ ସମୟ ନଥିଲା । ଦେଶ ଜଳୁଥିଲା । ଜବାହରଲାଲ ସବୁଠାରେ ପହଞ୍ଚି ଆକ୍ରାନ୍ତ ଲୋକମାନଙ୍କୁ ଆଶ୍ୱାସନା ଓ ପ୍ରବୋଧନା ଦେଇ, ଶାନ୍ତି ପ୍ରତିଷ୍ଠାରେ ଲାଗିପଡ଼ିଲେ । ଯେଉଁଠାରେ ମୁସଲମାନମାନଙ୍କ ଉପରେ ଆକ୍ରମଣର ସମ୍ବାଦ ପାଇଲେ, ତୁରନ୍ତ ସେଠାରେ ସେ ପହଞ୍ଚିଯାଉଥିଲେ । ସେମାନଙ୍କୁ ବୁଝେଇବାକୁ ଚେଷ୍ଟା କରୁଥିଲେ । ସେଥିରେ ବିଫଳ ହେଲେ ବିଦ୍ରୋହୀଙ୍କୁ ଗୁଳି କରିବାକୁ ନିଜର ଦେହରକ୍ଷୀମାନଙ୍କୁ ନିର୍ଦ୍ଦେଶ ଦେଉଥିଲେ । ତାଙ୍କର କନ୍ୟା ଇନ୍ଦିରା ମୁସଲମାନ ଅଧ୍ୟୁସିତ ଅଞ୍ଚଳ, ଯେଉଁଠାରେ ଭୀଷଣ ପରିସ୍ଥିତି ଯୋଗୁଁ କୌଣସି ହିନ୍ଦୁ ମଧ ପଶିବାକୁ ସାହସ କରୁନଥିଲେ, ସେଠାରେ ପହଞ୍ଚି ନିଃସ୍ୱ ଲୋକମାନଙ୍କୁ ସାହାଯ୍ୟ କରୁଥିଲେ । ତାଙ୍କର ଗୃହ ଭୟଭୀତ ମୁସଲମାନମାନଙ୍କର ଆଶ୍ରୟସ୍ଥଳୀ



ଶରଣାର୍ଥୀ ଶିବିର ପରିଦର୍ଶନ

ହୋଇପଡ଼ିଥିଲା ।

ଯେଉଁଠାରେ ପୋଲିସ ଓ ସେନାଙ୍କର ବନ୍ଧୁକ ହାର ମାନିଥିଲା, ସେଠାରେ ଜଣେ କ୍ଷୀଣକାୟ କ୍ଷୁଦ୍ର ଧୋତିଯୁକ୍ତ ନଗ୍ନପ୍ରାୟ ବ୍ୟକ୍ତି ହାତରେ ଖଣ୍ଡିଏ ବାଡ଼ି ଧରି ସଫଳ ହୋଇଥିଲେ । ସେ ହେଉଛନ୍ତି ବାପୁ, ଗାନ୍ଧିଜୀ । ଭାରତ ଏବଂ ପାକିସ୍ତାନ ଯେତେବେଳେ ନିଜ ନିଜର ସାମରିକ ବାହିନୀକୁ ନେଇ ସ୍ୱାଧୀନତା ଉତ୍ସବ ପାଳୁଥିଲେ, ବାପୁ ପୂର୍ବ ପାକିସ୍ତାନର ଦଙ୍ଗାଗ୍ରସ୍ତ ଅଞ୍ଚଳମାନଙ୍କରେ ପଦଯାତ୍ରା କରି ହିନ୍ଦୁ ଓ ମୁସଲମାନମାନଙ୍କୁ, ପରସ୍ପର ଭାଇ ଭାଇ ପରି ଚଳିବାକୁ ପ୍ରବର୍ତ୍ତାଇବାରେ ଲାଗିଥିଲେ । ସେ ଧର୍ମ ନାମରେ ହିଂସାକୁ ନିନ୍ଦା କରିଥିଲେ ଏବଂ ଘୋଷଣା କରିଥିଲେ, ''ମୁଁ ସମସ୍ତ ଧର୍ମର ପ୍ରତିନିଧି ଏବଂ ମୁଁ ଯେପରି ଜଣେ ସଚ୍ଚୋଟ ଏବଂ ବିଶ୍ୱାସୀ ହିନ୍ଦୁ, ଠିକ୍ ସେହିପରି ଜଣେ ପ୍ରକୃତ ମୁସଲମାନ, ପ୍ରକୃତ ଖ୍ରୀଷ୍ଟିୟାନ, ପ୍ରକୃତ ଶିଖ୍ ଏବଂ ପ୍ରକୃତ ପାର୍ସୀ ମଧ୍ୟ ।'' ଯେତେବେଳେ କଲିକତାରେ ଦଙ୍ଗା ବ୍ୟାପିଗଲା, ସେ ଅନୁଭବ କଲେ ଯେ, ଲୋକଙ୍କର ଚେତା ଫେରାଇବାର ଏକମାତ୍ର ଉପାୟ ହେଉଛି ତାଙ୍କର ପ୍ରାଣବଳୀ ଦେବା । ସେଥିପାଇଁ ସେ ଆମରଣ ଅନଶନ ଆରମ୍ଭ କଲେ ।

ଅନଶନର ସମ୍ବାଦ ବ୍ୟାପିଯିବା ମାତ୍ରେ ଦେଶର ସବୁପ୍ରକାରର ଲୋକ, ଧନୀ ବା ଗରିବ, ନେତା ବା ସାଧାରଣ ଲୋକ ଏବଂ ସ୍ତ୍ରୀ, ହିନ୍ଦୁ, ମୁସଲମାନ ସମସ୍ତେ ତାଙ୍କୁ ଅନଶନ ଭାଙ୍ଗିବା ପାଇଁ ଅନୁରୋଧ କଲେ । ଗାନ୍ଧିଜୀ କିନ୍ତୁ ଏ ମନୁଷ୍ୟ ହତ୍ୟା ସମ୍ପୂର୍ଣ୍ଣ ବନ୍ଦ ନହେଲା ପର୍ଯ୍ୟନ୍ତ ଅନଶନ ଭାଙ୍ଗିବେ ନାହିଁ ବୋଲି ମନା କରିଦେଲେ । ଏକ ଅଲୌକିକ ଘଟଣା ଘଟିଲା, ଯାହା କେବଳ ଗାନ୍ଧୀଙ୍କ ପାଇଁ ସମ୍ଭବ ହୋଇପାରିଥିଲା । ହିନ୍ଦୁ ଏବଂ ମୁସଲମାନମାନେ ସମସ୍ତେ ତାଙ୍କ ପାଖକୁ ଆସି କ୍ଷମା ମାଗିଲେ, ସେମାନେ ତାଙ୍କର ରକ୍ତରେ ଶପଥ ପତ୍ରରେ ସ୍ୱାକ୍ଷର କରି ପ୍ରତିଜ୍ଞା କଲେ ଯେ, ଭବିଷ୍ୟତରେ ଆଉ ପରସ୍ପର ମଧ୍ୟରେ ଗଣ୍ଡଗୋଳ କରିବେ ନାହିଁ । ଏଥର ଅନଶନ ଭଙ୍ଗ କରନ୍ତୁ ବୋଲି ସେମାନେ ଅନୁରୋଧ କଲେ । ପରିଷ୍କାର ଶୁଣାଯାଉନଥିବା ଦୁର୍ବଳ ସ୍ୱରରେ ଗାନ୍ଧିଜୀ ହିନ୍ଦୁମାନଙ୍କୁ କହିଲେ, ସେମାନେ ମୁସଲମାନ ଅଞ୍ଚଳକୁ ଯାଇ ସେମାନଙ୍କର ନିରାପତ୍ତା ରକ୍ଷା କରିବେ ବୋଲି ପ୍ରତିଜ୍ଞା କରନ୍ତୁ । ଶାନ୍ତି ଫେରିଆସିଲା ଏବଂ ଗାନ୍ଧିଜୀ ତାଙ୍କ ଅନଶନ ଭଙ୍ଗ କଲେ ।

ଗାନ୍ଧିଜୀଙ୍କ ମୁସଲମାନମାନଙ୍କ ପାଇଁ ଥିବା ସମର୍ଥନକୁ ଅନେକେ ପସନ୍ଦ କଲେନାହିଁ । ମାସ ମାସ ଧରି ଚାଲିଥିବା ହିଂସାକାଣ୍ଡ କିପରି ଘୃଣାର ଛାପ ମଧ୍ୟ ପକାଇ ଦେଇଥିଲା । ଲକ୍ଷ ଲକ୍ଷ ଲୋକ ସୀମା ଅତିକ୍ରମ କରି ଆସିଲାବେଳେ ସେମାନଙ୍କର ଅଙ୍ଗେଲିଭା ଅତ୍ୟାଚାର ଏବଂ ସ୍ୱ-ଚକ୍ଷୁରେ ଦେଖିଥିବା ଘଟଣାମାନ ବର୍ଣ୍ଣନା, ଏ ପାଖରେ ଲୋକମାନଙ୍କର ମାନସିକ ଉତ୍ତେଜନାକୁ ଆହୁରି ପ୍ରଜ୍ୱଳିତ କରିଦେଲା । ଉତ୍ତର ଭାରତରେ ପୁଣିଥରେ ପାଶବିକ ଦଙ୍ଗା ଦେଖାଦେଲା । ଦିଲ୍ଲୀରେ ଥାଇ ଗାନ୍ଧିଜୀ ୧୯୪୮ ମସିହା ଜାନୁଆରୀ 13 ତାରିଖରେ ପୁଣିଥରେ ସାମ୍ପ୍ରଦାୟିକ ଶାନ୍ତି ପ୍ରତିଷ୍ଠା ଓ ମୁସଲମାନମାନଙ୍କୁ ସଦ୍‌ବ୍ୟବହାର ଦେଖାଇବା ପାଇଁ ଜୋର୍ ଦେଇ ଆମରଣ ଅନଶନ ଆରମ୍ଭ କରିଦେଲେ । ପାକିସ୍ତାନ ସହିତ ସୁସମ୍ପର୍କ ରଖିବା ପାଇଁ ସେ ବାରମ୍ବାର କହିଆସୁଥିଲେ ।

ଭାରତ ସରକାର ଗୋଟିଏ ନିଷ୍ପତ୍ତି ନେଲେ ଯେ, ପାକିସ୍ତାନ ତାହା ଆଡ଼େ ଦଙ୍ଗା ନ ରୋକିବା

ପର୍ଯ୍ୟନ୍ତ ତା'ର ପ୍ରାପ୍ୟ ଧନ ତାକୁ ଦିଆଯିବନାହିଁ । ଗାନ୍ଧିଜୀ ଏହାକୁ ଗ୍ରହଣ କରିପାରିଲେ ନାହିଁ ଏବଂ ପାକିସ୍ତାନକୁ ତା'ର ପ୍ରାପ୍ୟ ଦେଇଦେବା ପାଇଁ ସରକାରଙ୍କୁ ପ୍ରବର୍ତ୍ତାଇଥିଲେ । କେତେକ ଲୋକ ଏଥିରେ କ୍ଷୁବ୍ଧ ହେଲେ ଏବଂ ଗାନ୍ଧିଜୀଙ୍କ ପ୍ରତି ସେମାନଙ୍କର ବିରକ୍ତି ବଢ଼ିବାରେ ଲାଗିଲା । ଥରେ କିଛି ଶରଣାର୍ଥୀ ''ଗାନ୍ଧିଜୀ ମରିଯାଆନ୍ତୁ'' ବୋଲି କହୁଥିବାର ଜବାହରଲାଲଙ୍କ କାନରେ ପଡ଼ିଲା । ସେ ଏଥିରେ ଭୀଷଣ ରାଗିଯାଇଥିଲେ ଏବଂ ଚିତ୍କାର କରି ତାଙ୍କ ଆଡ଼କୁ ମାଡ଼ିଯାଇ ପଚାରିଥିଲେ, ''ଏପରି କଥା କହିବାକୁ କିଏ ସାହସ କଲା ? ଆସ, ବାହାରି ଆସି ଆଗ ମୋତେ ମାରିଦିଅ ।'' ତା'ପରେ ଦଳଟି ଆପେଆପେ ଅପସରି ଗଲେ ।

ଗାନ୍ଧିଜୀଙ୍କୁ ଅଣାଅଶୀ ବର୍ଷ ବୟସ ହୋଇଯାଇଥିଲା । ତାଙ୍କ ଶରୀର ଉପବାସର ଚାପ ଏ ବୟସରେ ସହିବା ଅବସ୍ଥାରେ ନଥିଲା । ତାଙ୍କ ସ୍ୱାସ୍ଥ୍ୟର ଅବନତି ଘଟିବାରେ ଲାଗିଲା । ତାଙ୍କୁ ପରୀକ୍ଷା କରୁଥିବା ଡ଼ାକ୍ତର ଅତିବେଶୀରେ ସେ ଆଉ ଛତିଶ ଘଣ୍ଟା ବଞ୍ଚି ପାରିବେ ବୋଲି ସତର୍କ କରାଇଦେଲେ । ଆଉ ଏକ ଅଲୌକିକ ଘଟଣା ଘଟିଗଲା । ଦୁଇଶତ ସହସ୍ର ଲୋକ ସ୍ୱାକ୍ଷର ସହିତ ଲିଖିତ ଶପଥ କଲେ ଯେ, ସେମାନେ ମୁସଲମାନମାନଙ୍କର ସମସ୍ତ ଦେଖାରଖା କରିବେ । କୋରାନ୍, ଗୀତା ଏବଂ ବାଇବେଲ ପାଠ ସହିତ ଅଳ୍ପ ଲେମ୍ବୁରସ ପାନକରି ଗାନ୍ଧିଜୀ ତାଙ୍କର



ଗାନ୍ଧିଜୀଙ୍କ ସହିତ

ଅନଶନ ଭଙ୍ଗ କଲେ ।

ଗାନ୍ଧିଜୀଙ୍କର ଜୀବନ ରକ୍ଷା ହେଲା ସତ, କିନ୍ତୁ ସମସ୍ତେ ଏଥିରେ ଖୁସି ହୋଇପାରିଲେ ନାହିଁ । କେତେକ ଧର୍ମାନ୍ଧ ଲୋକ ତାଙ୍କୁ ହତ୍ୟା କରିବା ପାଇଁ ସ୍ଥିର କଲେ । ଏଥିପାଇଁ ସୁଚିନ୍ତିତ ଯୋଜନା କରି ତା'କୁ କାର୍ଯ୍ୟକାରୀ ମଧ୍ୟ କରାଗଲା । 1948 ମସିହା ଜାନୁଆରୀ 30, ଗାନ୍ଧିଜୀ ବିରଳା ଭବନର ବଗିଚାରେ ପ୍ରାର୍ଥନା ସଭାକୁ ଯାଉଛନ୍ତି । ଜଣେ ଯୁବକ ହଠାତ୍ ତାଙ୍କ ସାମନାକୁ ଚାଲି ଆସିଲା, କ୍ଷମା



ଗାନ୍ଧିଜୀଙ୍କ ଶବ ଶୋଭାଯାତ୍ରା

ମାଗିବା ପରି ତାଙ୍କ ପାଦ ଛୁଇଁଲା ଏବଂ ତା'ପରେ ତାଙ୍କୁ ଗୁଳିମାରି ହତ୍ୟା କଲା । ଜବାହରଲାଲ ଦୁଃଖରେ ଭାଙ୍ଗିପଡ଼ି କହିଲେ, ''ଆମ ପାଖରେ ଥିବା ସର୍ବଶ୍ରେଷ୍ଠ ସମ୍ପଦକୁ ଆମେ ରକ୍ଷାକରିପାରିଲୁ ନାହିଁ ।''

ଜବାହରଲାଲଙ୍କ ବାଣୀରେ ଭାରତର ଦୁଃଖ ପ୍ରତିବିମ୍ବିତ ହେଲା, ପ୍ରିୟ ବାପୁଙ୍କ ତିରୋଧାନରେ । ଜାତି ଉଦ୍ଦେଶ୍ୟରେ ଏକ ବେତାର ଭାଷଣରେ ସେ ବାରମ୍ବାର ଭାଙ୍ଗି ପଡୁଥିବା ସ୍ୱରରେ କହିଲେ, ''ଆମ ଜୀବନରୁ ଆଲୋକ ଲିଭିଗଲା ଏବଂ ଚାରିଆଡ଼େ ଅନ୍ଧାର ଘୋଟିଗଲା । ସେକଥା ମୁଁ କିପରି ପ୍ରକାଶ କରିବି, ମୋର ଭାଷା ସେଥିପାଇଁ ଅଭାବ । ଆମର ପ୍ରିୟ ନେତା ବାପୁ, ଏ ଜାତିର ପିତା ଆଉ ଇହଜଗତରେ ନାହାନ୍ତି ।''

ଜବାହରଲାଲ ନିଜକୁ ସମ୍ପୂର୍ଣ୍ଣ ଏକୁଟିଆ ମନେକଲେ । ଗାନ୍ଧିଜୀଙ୍କ ସହିତ ଯଦିଓ ସେ ସହମତ ହୋଇପାରୁନଥିଲେ, ତଥାପି ତାଙ୍କ ପାଇଁ ସ୍ନେହ, ଭକ୍ତି ଓ ସମ୍ମାନ ସର୍ବଦା ରହିଥିଲା । ସବୁ ସମୟରେ ତାଙ୍କର ଉପଦେଶ ଓ ଆଶୀର୍ବାଦ ସେ କାମନା କରୁଥିଲେ । ଏବେ ତାଙ୍କୁ ଠିକ୍ ବାଟରେ ଚଳେଇନେବା ପାଇଁ ସାହାଯ୍ୟ କରିବାକୁ କେହି ଗୁରୁ ଆଉ ରହିଲେ ନାହିଁ । ଦୁଃଖ କରିବା ପାଇଁ କିନ୍ତୁ ଆଉ ସମୟ ନଥିଲା । ଅନେକ କାର୍ଯ୍ୟ କରିବାକୁ ଥିଲା । ଭାରତକୁ ଶକ୍ତିଶାଳୀ ଓ ଆତ୍ମନିର୍ଭରଶୀଳ



କର୍ମରତ ଜବାହରଲାଲ୍

କରି ଗଢ଼ିବାର ଥିଲା ।

ଜବାହରଲାଲ ବିଶ୍ରାମହୀନ ଭାବରେ ଦିନକୁ ଏଗାରରୁ ପନ୍ଦର ଘଣ୍ଟା ପର୍ଯ୍ୟନ୍ତ କାମ କରିବାରେ ଲାଗିଲେ । ବୃହତ୍ ଶିଳ୍ପାୟନ ପାଇଁ ଯୋଜନାମାନ ତିଆରି କରାଗଲା ଏବଂ ଭାରତରେ ଇସ୍ପାତ ଓ ଗୁରୁ ଯନ୍ତ୍ରପାତି ଉତ୍ପାଦନର ଏକ ବୃହତ ସମ୍ପ୍ରସାରଣ ଘଟିଲା ।

ଜବାହରଲାଲ ଚାହୁଁଥିଲେ, ଭାରତରେ ଇଂରେଜ ସମୟ ପରି ଭୟଙ୍କର ଦୁର୍ଭିକ୍ଷ ଆଉ ନପଡୁ । ସେଥିପାଇଁ ତାଙ୍କର ପ୍ରଥମ କାର୍ଯ୍ୟଥିଲା ଖାଦ୍ୟଶସ୍ୟ ଉତ୍ପାଦନ ବଢ଼ାଇବା । ଉତ୍ତମ ଜଳସେଚନ ଏବଂ ଆଧୁନିକ କୃଷିଦ୍ୱାରା କେବଳ ତାହା ସମ୍ଭବ ହେବ । ତେଣୁ ଜଳବିଦ୍ୟୁତ ବନ୍ଧ



ଭାକ୍ରା ବନ୍ଧଠାରେ



ଏକ ବୈଷୟିକ ତାଲିମ କେନ୍ଦ୍ରରେ↑

↓ହିନ୍ଦୁସ୍ଥାନ୍ ଉଡ଼ାଜାହାଜ ସଂସ୍ଥାରେ



ଉପରେ ସେ ଜୋର ଦେଇଥିଲେ ଯାହାକୁକି ସେ ଆମର ନୂତନ ମନ୍ଦିର ଭାବରେ ନାମକରଣ କରିଥିଲେ । ଜବାହରଲାଲ କିନ୍ତୁ କେବଳ ଉତ୍ପାଦନ ବଢ଼ାଇବାକୁ ଚାହୁଁନଥିଲେ । ତାଙ୍କର ଇଚ୍ଛା ଥିଲା, ଏ ଉତ୍ପାଦନର ଫଳ ଲୋକଙ୍କ ମଧ୍ୟରେ ସମାନ ଭାବରେ ବାଣ୍ଟିହୋଇଯାଉ ।

ତାଙ୍କ ହୃଦୟରେ ଅନ୍ୟତମ କାମନା ଥିଲା, ବିଜ୍ଞାନ ଓ ବୈଷୟିକ ଉନ୍ନତି, ବିଶେଷକରି ଆଣବିକ ଶକ୍ତିର ବିକାଶ । ସେ ଚାହୁଁଥିଲେ ବୈଜ୍ଞାନିକ ପରୀକ୍ଷଣ, ନୂତନତା ଏବଂ ପ୍ରାପ୍ତି କ୍ଷେତ୍ରରେ ଭାରତ ସର୍ବଦା ଅଗ୍ରଗଣ୍ୟ ହେଉ । ଏହି ସ୍ୱପ୍ନର ପୂର୍ଣ୍ଣତା ପାଇଁ ସେ ଅନେକ ଜାତୀୟ ବୈଜ୍ଞାନିକ ଗବେଷଣାଗାର ପ୍ରତିଷ୍ଠା କରାଇଥିଲେ । ଉଚ୍ଚଶିକ୍ଷା କ୍ଷେତ୍ରରେ ସମ୍ମାନସ୍ପଦ ବୈଷୟିକ ଅନୁଷ୍ଠାନମାନ ଦେଶର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠା କରାଯାଇଥିଲା । ବିଶ୍ୱବିଦ୍ୟାଳୟର ସଂଖ୍ୟା ମଧ୍ୟ ଅତ୍ୟଧିକ ବୃଦ୍ଧିପାଇଥିଲା । ସେଥିରୁ କେତେକ ଏବେ ଆପଣାଗୁଣରେ ପୃଥିବୀର ବିଶିଷ୍ଟ ଶିକ୍ଷାଦାନ କେନ୍ଦ୍ର ଭାବରେ ପ୍ରସିଦ୍ଧି ପାଇଛି ଏବଂ ଭାରତକୁ ବୃହତ୍ତମ ତାଲିମପ୍ରାପ୍ତ ମଣିଷ ସମ୍ପଦର ଅଧିକାରୀ କରିପାରିଛି । ମାପ ଓ ଓଜନର ପରିବର୍ତ୍ତନ ହେଲା ଏବଂ ଦଶମିକ ମୁଦ୍ରା ପ୍ରଚଳିତ ହୋଇଥିଲା । ଜବାହରଲାଲଙ୍କର ନିରବଚ୍ଛିନ୍ନ ଉଦ୍ୟମ ଫଳରେ ଭାରତ ଦୁଇଦଶନ୍ଧିଠାରୁ କମ୍ ସମୟ ମଧ୍ୟରେ ମଧ୍ୟ-ଯୁଗୀୟ ସାମନ୍ତବାଦୀ ସମାଜରୁ ଆଧୁନିକ ବିଂଶ ଶତାବ୍ଦୀର ଏକ ନୂତନ ଦେଶ ହୋଇଗଲା ।

ଜବାହରଲାଲଙ୍କର ଗଣତନ୍ତ୍ର ପ୍ରତି ଗଭୀର ବିଶ୍ୱାସ ଥିଲା । ''ବ୍ୟକ୍ତିର ସ୍ୱାଧୀନତା ବୃଦ୍ଧି ତା'ର



ଏକ ଆଣବିକ ରିଆକ୍ଟରର ଉଦ୍‌ଘାଟନ କାଳରେ

କ୍ଷମତା ଓ କାର୍ଯ୍ୟକାରୀତାର ସମ୍ପୂର୍ଣ୍ଣ ବିନିଯୋଗଦ୍ୱାରା ସମ୍ଭବ'' ବୋଲି ସେ ଲେଖିଥିଲେ । ସେଥିପାଇଁ କେତେକ ରାଜ୍ୟରେ କଂଗ୍ରେସ ଦଳର ପରାଜୟ ଯୋଗୁଁ ଯଦିଓ ସେ ଦୁଃଖିତ ହୋଇଥିଲେ, ତଥାପି ସ୍ୱାଧୀନ ଭାରତର ରାଜନୈତିକ ଗଣତନ୍ତ୍ରର ଏ ପରିପ୍ରକାଶରେ ସେ ବେଶ୍ ଆନନ୍ଦିତ ହୋଇଥିଲେ । ପ୍ରକୃତ ଗଣତନ୍ତ୍ରବାଦୀ ଜବାହରଲାଲ ପାର୍ଲାମେଣ୍ଟାରୀ ଅନୁଷ୍ଠାନର ବିକାଶ ଅତ୍ୟନ୍ତ ଯତ୍ନ ଓ ସମ୍ମାନର ସହିତ କରି ଆସିଥିଲେ ଏବଂ ସେଥିପାଇଁ ସର୍ବଦା ମୁକ୍ତ ବିତର୍କକୁ ପ୍ରଶ୍ରୟ ମଧ୍ୟ ଦେଉଥିଲେ । ସେଥିଯୋଗୁଁ ଅନ୍ୟ ଦେଶଗୁଡ଼ିକ ଏକଛତ୍ରବାଦୀଙ୍କ କବଳରେ ପଡ଼ିଯାଉଥିଲାବେଳେ ଏଠାରେ ଏକ ସକ୍ରିୟ ଗଣତନ୍ତ୍ରର ମୂଳଦୁଆ ହୋଇପାରିଥିଲା ।

ଜବାହରଲାଲ ବିଭାଜନର ବିରୋଧୀ ଥିଲେ, କିନ୍ତୁ ତା'କୁ ଗ୍ରହଣ କରିବାକୁ ସେ ବାଧ୍ୟ ହୋଇଥିଲେ । ସଂଖ୍ୟାଲଘୁ, ବିଶେଷ କରି ମୁସଲମାନମାନେ ଆପଣାକୁ ସମକକ୍ଷ ଓ ସୁରକ୍ଷିତ



ଆଲବର୍ଟ ଆଇନ୍‌ଷ୍ଟାଇନ୍‌ଙ୍କ ସହିତ

ରଖିବା ସେ ଚାହୁଁଥିଲେ । ଧର୍ମାନ୍ଧତାକୁ ସେ ଦୃଢ଼ ହସ୍ତରେ ଦମନ କରୁଥିଲେ । ଏକଦା ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ ସମ୍ମିଳନୀରେ ସେ କହିଥିଲେ, ''ମୁଁ ବଞ୍ଚିଥିଲା ପର୍ଯ୍ୟନ୍ତ ସାମ୍ପ୍ରଦାୟିକତାକୁ ଆମ ନୀତି ଭିତରେ ପ୍ରବେଶ କରାଇଦେବି ନାହିଁ କିମ୍ବା ସେଥିପାଇଁ କୌଣସି ବିଭତ୍ସ ଓ ଅସଭ୍ୟ ବ୍ୟବହାରକୁ ପ୍ରଶୟ ମଧ ଦେବିନାହିଁ ।'' ଭାରତର ଏକତା ରକ୍ଷାପାଇଁ ଏହା ଯେ ଏକମାତ୍ର ଉପାୟ, ତାହା ତାଙ୍କର ବିଶ୍ୱାସ ଥିଲା ।

ନାରୀର ଅଧିକାର ରକ୍ଷା ଜବାହରଲାଲଙ୍କର ଆଉ ଏକ ପ୍ରାଥମିକ ଆଗ୍ରହ ଥିଲା । ସେଥିପାଇଁ ସେ ହିନ୍ଦୁ ଆଇନରେ ବିବାହ, ଛାଡ଼ପତ୍ର, ପୋଷ୍ୟପୁତ୍ର ଏବଂ ଉତ୍ତରାଧିକାର ସମ୍ପର୍କରେ ପରିବର୍ତ୍ତନ ପାଇଁ ଲଢ଼ିଆସିଥିଲେ । ନିଯୁକ୍ତି କ୍ଷେତ୍ରରେ ସମାନ ସୁଯୋଗ ତଥା ସମାନ କାମ ପାଇଁ ସମାନ



ପ୍ରଧାନମନ୍ତ୍ରୀ ମଧ ଧାଡ଼ିରେ

ମଜୁରୀ ଉପରେ ମଧ୍ୟ ସେ ଜୋର ଦେଇଥିଲେ । ସମସ୍ତ ଜୀବିକାରେ ଭାରତୀୟ ମହିଳାମାନଙ୍କର ପ୍ରବେଶକୁ ସେ ପ୍ରୋତ୍ସାହିତ କଲେ । ଯାହାଫଳରେ ସେମାନେ ସହଜରେ ଶିକ୍ଷୟିତ୍ରୀ, ସାମ୍ବାଦିକ, ଓକିଲ, ଇଞ୍ଜିନିୟର, ସଂସଦ-ସଦସ୍ୟ, ରାଜଦୂତ, ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ଏବଂ କେନ୍ଦ୍ରରେ ମନ୍ତ୍ରୀ ହୋଇପାରିଲେ । ସେମାନେ ବିଭିନ୍ନ ସରକାରୀ ସଂସ୍ଥା  ଏପରିକି ପୋଲିସରେ ମଧ୍ୟ ବହୁସଂଖ୍ୟାରେ ଯୋଗଦେଲେ । ନାରୀମାନଙ୍କୁ ସମାନ ଅଧିକାର ଦେବାରେ ଇଉରୋପ ଓ ଆମେରିକା ପରି ବହୁ ଉନ୍ନତ ଦେଶ ଅପେକ୍ଷା ମଧ୍ୟ ଭାରତ ଆଗେଇଗଲା ।

ଜବାହରଲାଲଙ୍କ ନେତୃତ୍ୱ ଯୋଗୁଁହିଁ ଗୋଟିଏ ନୂତନ ସମ୍ବିଧାନ ପ୍ରଣୟନ ଓ ଗୃହୀତ ହୋଇପାରିଲା । ସେ ଚାହିଁଥିବା ମୂଲ୍ୟବୋଧ ଏଥିରେ ପ୍ରତିବିମ୍ବିତ ହେଲା । ସମସ୍ତ ନାଗରିକଙ୍କ ପାଇଁ ସାମାଜିକ, ଅର୍ଥନୈତିକ ଏବଂ ରାଜନୈତିକ ନ୍ୟାୟ, ଚିନ୍ତା, କଥା, ବିଶ୍ୱାସ ଏବଂ ପୂଜାରେ ସ୍ୱାଧୀନତା, ସ୍ଥାନ ଏବଂ ସୁଯୋଗର ସମତା, ପୁଣି ବ୍ୟକ୍ତିର ସମ୍ମାନ ଓ ଦେଶର ଏକତାରକ୍ଷା ପାଇଁ ଭ୍ରାତୃଭାବର ପ୍ରତିଷ୍ଠା ପ୍ରତି ପ୍ରାଧାନ୍ୟ ଦିଆଯାଉଥିଲା ।

ଜବାହରଲାଲଙ୍କର ଚିନ୍ତା କେବଳ ଭାରତ ମଧ୍ୟରେ ସୀମିତ ନଥିଲା, ତାଙ୍କ ଦୃଷ୍ଟିର  ପରିଧି



ଭାରତୀୟ ସମ୍ବିଧାନରେ ସ୍ୱାକ୍ଷର

ସମଗ୍ର ପୃଥିବୀକୁ ବ୍ୟାପିଯାଇଥିଲା । ସେ ସବୁ ଦେଶ ମଧ୍ୟରେ ବନ୍ଧୁତା ଚାହୁଁଥିଲେ, କିନ୍ତୁ ସମାନ ଭାବରେ । ଋଷିଆ କିମ୍ବା ଆମେରିକା ପକ୍ଷକୁ ଢଳିଯିବାକୁ ସେ ସିଧାସଳଖ ମନା କରିଦେଇଥିଲେ । ନିରପେକ୍ଷ ରହିବା ଦେଶପାଇଁ ସବୁଠାରୁ ଉତ୍ତମ ବ୍ୟବସ୍ଥା ବୋଲି ସେ ବିଶ୍ୱାସ କରୁଥିଲେ । ଶେଷରେ ତାଙ୍କର ବିଜୟ ହେଲା । ଆପଣାର ବିଶ୍ୱାସ ଏବଂ ନିରବଚ୍ଛିନ୍ନ ଉଦ୍ୟମ ଫଳରେ ସମସ୍ତେ ତାଙ୍କ ମତ ଆଡ଼କୁ ଆକର୍ଷିତ ହୋଇ ପଡୁଥିଲେ । ଜବାହରଲାଲ ଯେପରି ପୃଥିବୀର ସମସ୍ତ ପ୍ରଧାନ ନେତାମାନଙ୍କ ଦ୍ୱାରା ସମ୍ମାନିତ ହେଉଥିଲେ । ସେହିପରି ସେମାନଙ୍କୁ ମଧ୍ୟ ଆପଣା ଦେଶରେ ଗ୍ରହଣ କରିଥିଲେ । ଆମେରିକାର ରାଷ୍ଟ୍ରପତି ଆଇଜେନ୍ ହାୱାର ତାଙ୍କ ସମ୍ପର୍କରେ କହିଥିଲେ, ''ଭାରତ ପୃଥିବୀର ଅନ୍ୟଦେଶମାନଙ୍କୁ ଯେପରି ଉତ୍ତମ ଆତ୍ମବିଶ୍ୱାସର ସହିତ କହିପାରୁଛି, ସେହିପରି ଅଧିକ



ଗୋଷ୍ଠୀନିରପେକ୍ଷ ରାଷ୍ଟ୍ର ମୁଖ୍ୟମାନଙ୍କର ଗୋଟିଏ ସମ୍ମିଳନୀରେ ।
ରାଷ୍ଟ୍ରପତି ନାସେର ମଧ୍ୟ ମଝିରେ ଅଛନ୍ତି



ରାଷ୍ଟ୍ରପତି ଆଇଜେନ ହାୱାରଙ୍କ ସହିତ

ରାଷ୍ଟ୍ରପତି କେନେଡ଼ିଙ୍କ ସହିତ



ସମ୍ମାନର ସହିତ ସେମାନେ ଶୁଣୁଛନ୍ତି ।''

ଜବାହରଲାଲଙ୍କର ବିଶ୍ୱଶାନ୍ତି ପ୍ରତିଷ୍ଠା ପାଇଁ ଚେଷ୍ଟା ତାଙ୍କୁ ବହୁ ସମ୍ମାନ ଆଣିଦେଇଥିଲା । ଇଜିପ୍ଟର ରାଷ୍ଟ୍ରପତି ନାସେର ତାଙ୍କୁ ''ମାନବ ଚେତନାର ମୂର୍ତ୍ତିମନ୍ତ ପ୍ରତୀକ'' ଭାବରେ ବର୍ଣ୍ଣନା କରିଥିଲେ । ଯେ କୌଣସି ବିବାଦରେ ଭାରତର ନିରପେକ୍ଷତା ପ୍ରତି ଏପରି ବିଶ୍ୱାସ ଥିଲା ଯେ,

ଭାରତୀୟ ସେନାମାନଙ୍କୁ ଦୂରବର୍ତ୍ତୀ କୋରିଆ, କଙ୍ଗୋ, ଗାଜା ଆଦିରେ ଶାନ୍ତି ବଜାୟ ରଖିବା ପାଇଁ କୁହାଯାଉଥିଲା ।

କିନ୍ତୁ ଜବାହରଲାଲଙ୍କର ଅନ୍ୟ ଦେଶ, ବିଶେଷ କରି ପଡ଼ୋଶୀ ଦେଶ ସହିତ ବନ୍ଧୁତାରେ ଥିବା ବିଶ୍ୱାସରେ ପ୍ରବଳ ଧକ୍କା ଲାଗିଲା 1962 ରେ । ଚୀନ ଭାରତର ଉତ୍ତର ପୂର୍ବ ଅଞ୍ଚଳ ଆକ୍ରମଣ କଲା । ଜବାହରଲାଲ ଚୀନ ସହିତ ବିଶେଷ ଭାବରେ ଭ୍ରାତୃଭାବ ପ୍ରତିଷ୍ଠା କରିଥିଲେ । ଜାତିସଂଘରେ ସେ ଚୀନ ପାଇଁ କହୁଥିଲେ ଏବଂ ସମସ୍ତ ଆନ୍ତର୍ଜାତିକ ସମ୍ମିଳନୀରେ ଚୀନ ସପକ୍ଷରେ ରହୁଥିଲେ । ଏ ଦୁଇଦେଶର ସମ୍ପର୍କକୁ ପ୍ରକାଶ କରିବା ପାଇଁ ସେ ଗୋଟିଏ ସ୍ଲୋଗାନ ସୃଷ୍ଟି କରିଥିଲେ ''ହିନ୍ଦୀ ଚୀନ ଭାଇ ଭାଇ ।'' ସମସ୍ତ ଆନ୍ତର୍ଜାତିକ ବିବାଦ ମାନସିକ ଓ ପ୍ରତି-ଆଲୋଚନା ଦ୍ୱାରା ସମାହିତ



ପ୍ରଧାନମନ୍ତ୍ରୀ ଚାଉ-ଏନ୍-ଲାଇଙ୍କ ସହିତ, 1957

ହୋଇପାରିବ ବୋଲି ସେ ମତ ଦେଇଆସିଥିଲେ । ଦେଶର ସୀମାରେ ଶତ୍ରୁସେନାଙ୍କର ସମସ୍ତ ସନ୍ଦେହଜନକ ଗତିବିଧି ସତ୍ତ୍ୱେ ଚୀନ ଯେ ବିଶ୍ୱାସଘାତକତା କରିବ ଏହା ସେ ଭାବିନଥିଲେ । ଭାରତ ସେତେବେଳେ ଯୁଦ୍ଧପାଇଁ ଆଦୌ ପ୍ରସ୍ତୁତ ନଥିଲା । ଚୀନ ଏ ଦେଶ ବିରୁଦ୍ଧରେ ତା'ର ସମର ବନ୍ଦ କରିବା ପୂର୍ବରୁ ବେଶ୍ ଏକ ବିରାଟ ଭାରତୀୟ ଭୂଖଣ୍ଡ ଅଧିକାର କରିନେଇଥିଲା ।




ପେକିଂର ଗୋଟିଏ ଜନସମାବେଶରେ

ଜବାହରଲାଲଙ୍କ ପ୍ରତି ଏହା ପ୍ରଚଣ୍ଡ ଆଘାତ ଥିଲା । ପ୍ରକୃତରେ ତା'ପରଠାରୁ ସେ ଆଉ ସହଜ ହୋଇପାରିଲେ ନାହିଁ ।

ଜଣେ ବିରାଟ ବ୍ୟକ୍ତିତ୍ୱ ଏବଂ ବିଶ୍ୱନେତା ହେବା ପଛରେ ଥିଲା ଜବାହରଲାଲଙ୍କ ମାନବିକ ଗୁଣ । ବେଶ୍ ସହଜ, ଆନ୍ତରିକ ଅଧୈର୍ଯ୍ୟ ପୁଣି କ୍ଷଣକୋପୀ । କିନ୍ତୁ ସବୁବେଳେ ସେ ଆପଣା ଭୁଲକୁ ସ୍ୱୀକାର କରୁଥିଲେ ଏବଂ ନିଜପ୍ରତି ପରିହାସ ମଧ କରୁଥିଲେ । କ୍ରୋଧିତ ମଣିଷର ମେଣ୍ଢ କିମ୍ୱା ଲାଠିମାଡ଼କୁ ସମ୍ମୁଖୀନ ହେବାରେ ତାଙ୍କ ସାହସକୁ ଯେତେବେଳେ ପ୍ରଶଂସା କରାଯାଇଥିଲା,



ଜବାହରଲାଲ ଏକ କ୍ରୀଡ଼ାଚପଳ ମୁହୂର୍ତ୍ତରେ

ସେତେବେଳେ ସେ କହିଥିଲେ, ''ବୀର ଭାବରେ ମୋର ପ୍ରଶଂସା ଅର୍ଥହୀନ,'' ଏବଂ ତାହା ତାଙ୍କ ଅହଙ୍କାର ଯୋଗୁଁ ସମ୍ଭବ ବୋଲି ବର୍ଣ୍ଣନା କରିଥିଲେ । ତାଙ୍କର ଜ୍ଞାନର ପରିହାସ କରି ସେ ଆତ୍ମଜୀବନୀରେ ଲେଖିଛନ୍ତି, ''କେହି ମୋର ଜ୍ଞାନର ଆଧିକ୍ୟ ସମ୍ପର୍କରେ କାହିଁତ ଅଭିଯୋଗ



ଏକ ପରିହାସର ମୁହୂର୍ତ୍ତ

କରିନାହାନ୍ତି ?'' ସେ କହିଥିଲେ, ତାଙ୍କର ''ଏକ ଅନ୍ଧ ବିଶ୍ୱସ୍ତ ମନୁଷ୍ୟ ଦଳ ଅଛନ୍ତି, ଯେଉଁମାନେ ସର୍ବଦା ସର୍ବତ୍ର ଉପସ୍ଥିତ । ସେମାନେ ବେଶ୍ ଉତ୍ତମ ଭାବରେ ଭଦ୍ର ଏବଂ ଶାନ୍ତ ମଧ୍ୟ ।'' ପ୍ରଧାନମନ୍ତ୍ରୀ



ଉପଭୋଗର ସମୟ

ଭାବରେ ତାଙ୍କର ଜନ୍ମଦିନର ରାତ୍ରିଭୋଜନ ସର୍ବଦା କୌତୁକ ପୋଷାକ ପରିହିତ ଭୋଜିରେ ପରିଣତ ହେଉଥିଲା । ଜବାହରଲାଲ ତାଙ୍କ ସଂଗୃହିତ ବିଭିନ୍ନ ଦେଶର ଜାତୀୟ ପୋଷାକରୁ ଗୋଟିଏ ବାଛି ପିନ୍ଧି ପକାଉଥିଲେ ।

ଜବାହରଲାଲ ଥିଲେ ଜଣେ ବହୁ ଆଗ୍ରହୀ ମଣିଷ । ଖେଳ ତାଙ୍କୁ ଯେପରି ଭଲ ଲାଗୁଥିଲା, ମଞ୍ଚ ଓ ସଂଗୀତ ପ୍ରତି ବି ସେ ସେହିପରି ଆଗ୍ରହୀ ଥିଲେ । ଜୀବନସାରା ଏତେ କାର୍ଯ୍ୟରେ ସମ୍ପୃକ୍ତ ଥାଇବି



ଡ଼ାଲ ହ୍ରଦରେ

ପୁସ୍ତକ ପ୍ରେମ ଓ ଅଧ୍ୟୟନକୁ ଶେଷ ପର୍ଯ୍ୟନ୍ତ ସେ ଅବ୍ୟାହତ ରଖିଥିଲେ । ସ୍ୱାଧୀନତା ସଂଗ୍ରାମ ବେଳେ ତାଙ୍କୁ ପ୍ରତି ପଇସାର ହିସାବ ରଖିବାକୁ ପଡୁଥିଲା, ଆଉ ସେତେବେଳେ ସେ କହିଥିଲେ, ''ମୋର ଗୋଟିଏ ମାତ୍ର ବଦଖର୍ଚ୍ଚ ଯାହା ଇଚ୍ଛାକରି ମଧ୍ୟ ମୁଁ ତ୍ୟାଗ କରିପାରିନଥିଲି, ତାହା ହେଲା ପୁସ୍ତକ କିଣା ।''

ସବୁବେଳେ ପ୍ରାୟତଃ ଏକୁଟିଆ ଥାଇ ଜବାହରଲାଲଙ୍କର ଜୀବପାଳନ ପ୍ରତି କିପରି ଗୋଟିଏ



ଜବାହରଲାଲ ପ୍ରାଣୀଙ୍କୁ ଭଲ ପାଉଥିଲେ









ଅନ୍ତରଙ୍ଗ ପଶୁପକ୍ଷୀଙ୍କ ମେଳରେ

ମୋହ ହୋଇଯାଇଥିଲା । ବହୁବର୍ଷ ଧରି ତାଙ୍କ ଘର ବିଭିନ୍ନ ପଶୁପକ୍ଷୀଙ୍କର ଏକ ବିଚିତ୍ର ସମାବେଶରେ ପରିଣତ ହେଉଥିଲା । ସେଥିରେ ଥିଲେ କୁକୁର, ପାରା, ଗୁଣ୍ଡୁଚିମୂଷା, ମୟୂର, ଗୋଟିଏ ହେଟାବାଘ ଛୁଆ, ଛୋଟ ବାଘ ଏବଂ ହିମାଳୟର ମଇଁଷି ଓ ହରିଣ ।



ଗ୍ରାମ ବକାଶ କାର୍ଯ୍ୟକ୍ରମର ଅଗ୍ରଗତି ପରିଦର୍ଶନ କରୁଛନ୍ତ

ଜବାହରଲାଲ ତାଙ୍କର ଦେଶ ଏବଂ ଦେଶବାସୀଙ୍କୁ ଭାରି ଭଲ ପାଉଥିଲେ ଏବଂ ସେମାନେ ମଧ୍ୟ ପ୍ରତିବଦଳରେ ତାଙ୍କୁ ଖୁବ୍ ସ୍ନେହ କରୁଥିଲେ । ଏହାର ପରିପ୍ରକାଶରେ ସେମାନେ ତାଙ୍କୁ ଦେଶର ସର୍ବୋଚ୍ଚ ସମ୍ମାନ ''ଭାରତ ରତ୍ନ'' ଦେଇଥିଲେ । ଚଉସ୍ତରୀ ବର୍ଷ ବୟସରେ ୧୯୬୪ ମେ 27 ରେ ଯେତେବେଳେ ସେ ଇହଲୀଳା ସମ୍ବରଣ କଲେ, ସେତେବେଳେ ସମଗ୍ର ଦେଶ ଦୁଃଖରେ



ଭାରତ ରତ୍ନ ପ୍ରଦାନ କରାଯାଉଛି

ଭାଙ୍ଗିପଡ଼ିଲା । ଏପରିକି ଭାରତର ବିଭିନ୍ନ ଅଞ୍ଚଳରେ ଥିବା ଭିନ୍ନ ରାଜନୀତିର ବିରୋଧି ଲୋକେ ମଧ ଲୁହ ଗଡ଼େଇଥିଲେ, କାରଣ ଦେଶସାରା ଜବାହରଲାଲଙ୍କୁ ସମସ୍ତେ ଭଲପାଉଥିଲେ । ଦିଲ୍ଲୀରେ ତାଙ୍କର ମରଶରୀର ଯେତେବେଳେ ଜାତୀୟ ମର୍ଯ୍ୟାଦା ସହିତ ନିଆଯାଉଥିଲା, ଲକ୍ଷ ଲକ୍ଷ ଲୋକ ବିଚଳିତ ହୃଦୟ ଏବଂ ଅଶ୍ରୁଳ ନୟନରେ ପଥଧାରରେ ଉପସ୍ଥିତ ରହି ତାଙ୍କୁ ବିଦାୟ ଦେଇଥିଲେ । ରାଜଘାଟ ନିକଟରେ ଏଇ ଶୋଭାଯାତ୍ରା ପହଞ୍ଚିବାକୁ ତିନିଘଣ୍ଟା ସମୟ ଲାଗିଥିଲା । ରାସ୍ତା ସାରା ''ଜବାହରଲାଲ ନେହେରୁ ଅମର ରହେ'' ସ୍ୱରରେ ଆକାଶ ପବନ ଗୁଞ୍ଜରିତ ହୋଇଉଠିଥିଲା ।

ସମଗ୍ର ଜୀବନକାଳର ବିଶ୍ୱାସ ପରି ଜବାହରଲାଲ ତାଙ୍କ ଇଚ୍ଛାପତ୍ରରେ ମଧ କହିଥିଲେ, ସେ ମୃତ୍ୟୁପରେ କୌଣସି ଧାମିକ ଉତ୍ସବ ଚାହାନ୍ତି ନାହିଁ । କିନ୍ତୁ ତାଙ୍କର ଚିତାଭସ୍ମ କେବଳ ବିଛାଡ଼ି ଦିଆଯାଉ ''ସେ ମାଟିରେ ଯେଉଁଠି ଭାରତର ଚାଷୀମାନେ ପରିଶ୍ରମ କରୁଛନ୍ତି । ତାହା ଭାରତର



ମର ଶରୀରର ଶୋଭାଯାତ୍ରା

ଧୂଳି ଓ ମାଟି ସାଙ୍ଗରେ ମିଶିଯାଉ ।'' ଜବାହରଲାଲ ଆଜି ଆଉ ନାହାନ୍ତି । କିନ୍ତୁ ତାଙ୍କର ମୂଲ୍ୟବୋଧ, ଯାହା ସେ ଆପଣାର ଦେଶବାସୀଙ୍କୁ ଦେଇଥିଲେ ଏବଂ ତାଙ୍କର ସ୍ନେହ ଏବେ ବି ଦେଶବାସୀଙ୍କ ମନରେ ବଞ୍ଚିରହିଛି । ଗୋଟିଏ ଛୋଟ ଘଟଣା ତାହା ପରିଷ୍କାର କରିଦିଏ ।

ଥରେ ଜବାହରଲାଲଙ୍କର ମୁସଲମାନ ଦରଜୀ ତାଙ୍କୁ ଗୋଟିଏ ପ୍ରଶଂସାପତ୍ର ମାଗିଲା । ପୃଥିବୀସାରା ବହୁ ସମ୍ରାଟ ଏବଂ ରାଷ୍ଟ୍ରମୁଖ୍ୟଙ୍କର ପୋଷାକ ମଧ୍ୟ ସେ ତିଆରି କରୁଥିଲା । ଜବାହରଲାଲ ତାଙ୍କୁ ପରିହାସରେ ପଚାରିଲେ, ''ତୁମ ପାଖରେ ଏତେ ରାଜାମହାରାଜାଙ୍କର ପ୍ରଶଂସାପତ୍ର ଥାଉଥାଉ ମୋର ସାମାନ୍ୟ ପ୍ରଶଂସାପତ୍ରଟିଏ କ'ଣ ହେବ ?''

ଦରଜୀର ଉତ୍ତର ଥିଲା, ''ଆପଣ ବି'ତ ଜଣେ ରାଜା ।'' ଜବାହରଲାଲ ତା'ପରେ କହିଲେ, ''ମୋତେ ରାଜା ମୋଟେ କହ ନାହିଁ । ସେମାନେ ଗୋଟିଏ ଶ୍ରେଣୀ ଯାହାର ମୁଣ୍ଡ ବୋଲି କିଛି ନଥାଏ ।''

ଦରଜୀ କହିଲା, ''ସେମାନେ ସମସ୍ତେ ସିଂହାସନରେ ବସିଥାନ୍ତି, କିନ୍ତୁ ଆପଣ ପରା ଲୋକଙ୍କର ହୃଦୟରେ ରାଜୁତି କରୁଛନ୍ତି ।''



ଜବାହରଲାଲ ଅଧ୍ୟୟନରତ

